# ଗୁଜୁରାଟର ନିଆଁ
# ମାନବତାବାଦର ଜୁଇ



ସୌରୀବଂଧୁ କର

## ଗୋଧ୍ରାଠାରେ ଫେବୃୟାରୀ ୨୭ ତାରିଖ ୨୦୦୨ରେ କ'ଣ ଘଟିଲା ଓ କାହିଁକି ଘଟିଲା ?

ଗୁଜୁରାଟର ଗୋଧ୍ରା ଷ୍ଟେସନଠାରୁ ୧ କି.ମି. ଦୂର ଗଲାପରେ ସାବରମତୀ ଏକସ୍‌ପ୍ରେସର ତିନିଗୋଟି ବଗିରେ ନିଆଁ ଲଗାଇଦେବା ଦ୍ୱାରା ୬୦ ଜଣ ତଥାକଥିତ ବିଶ୍ୱ ହିନ୍ଦୁ ପରିଷଦର କରସେବକଙ୍କର ମୃତ୍ୟୁ ଘଟଣା ପରେ ହିନ୍ଦୁତ୍ୱବାଦୀମାନଙ୍କର ଉଗ୍ର ସାଂପ୍ରଦାୟିକ ନରସଂହାର ଫଳରେ ସମଗ୍ର ଭାରତର ଧର୍ମନିରପେକ୍ଷ ବିଚାର ଓ ସମ୍ମାନରେ ଆଞ୍ଚ ଆସିଛି । କରସେବକମାନେ କୋଚ୍ ନଂ- ଏସ୍-୬ ଓ ଅନ୍ୟ ଦୁଇଟି କୋଚ୍‌ରେ ଯାତ୍ରା କରୁଥିଲେ । କୋଚ୍ ନଂ-୬ରେ ଏ ଘଟଣା ପ୍ରଥମେ ଘଟିଲା । ପ୍ରକୃତରେ ଯାହା କୁହାଯାଉଛି ଗୋଧ୍ରାଠାରେ ଏ ଘଟଣାର ସୂତ୍ରପାତ ହୋଇନାହିଁ । ଗୋଧ୍ରା ରେଳଷ୍ଟେସନଠାରୁ ୭୫ କି.ମି. ପୂର୍ବ ରେଳଷ୍ଟେସନ ଦାହୁଦ ଷ୍ଟେସନ୍‌ରୁ ଏହାର ଅୟମାରମ୍ଭ । ଦାହୁଦ ଷ୍ଟେସନରେ ସକାଳ ୯୫-୩୦ରୁ ୯୬-୦୦ ମଧ୍ୟରେ ଟ୍ରେନ୍ ପହଞ୍ଚିଲା । ଏହି କରସେବକମାନେ ଷ୍ଟେସନରେ ଓହ୍ଲାଇ ଷ୍ଟଲ୍‌ରୁ ଚା ଓ ଜଳଖିଆ ଖାଇଲେ ଏବଂ ଷ୍ଟଲମାଲିକଙ୍କ ସହିତ ଯୁକ୍ତିତର୍କ ହେବାଫଳରେ ଭଙ୍ଗାରୁଜା କରି ଟ୍ରେନ୍‌କୁ ଚାଲିଗଲେ । ଏହି ଘଟଣା ସଂପର୍କରେ ଷ୍ଟଲ ମାଲିକମାନେ ସ୍ଥାନୀୟ ଥାନାରେ କରସେବକମାନଙ୍କ ବିରୁଦ୍ଧରେ ଅଭିଯୋଗ ପତ୍ର ଦାଖଲ କଲେ ।

ପ୍ରାୟ ସକାଳ ୯୭ରୁ ୯୭-୧୫ ମଧ୍ୟରେ ଟ୍ରେନ୍ ଗୋଧ୍ରା ଷ୍ଟେସନରେ ପହଞ୍ଚିଲା । ସମସ୍ତ କରସେବକ ଡବାରୁ ଓହ୍ଲାଇ ଛୋଟିଆ ଚା' ଷ୍ଟଲ୍‌ରେ ଚା ଓ ଜଳଖିଆ ଖାଇଲେ ।

ଏହି ଷ୍ଟଲ୍‌ଟି ଜଣେ ବୁଢ଼ା ମିଆଁଙ୍କର । ତାକରଟିଏ ମଧ୍ୟ ମିଆଁଙ୍କୁ ସାହାଯ୍ୟ କରୁଥାଏ । କରସେବକମାନେ ଜାଣିଶୁଣି ଏହି ବୁଢ଼ାମିଆଁ ସହିତ ଯୁକ୍ତିତର୍କ କଲେ ଓ ପରେ ମାଡ଼ ମାରିଲେ ଏବଂ ତା'ର ଦାଢ଼ିକୁ ଟାଣିଲେ । ଜାଣିଶୁଣି ଯେହେତୁ ସେହି ବୃଦ୍ଧଲୋକଟି ସଂଖ୍ୟାଲଘୁ ସଂପ୍ରଦାୟର, କରସେବକମାନେ ଯୋଜନାବଦ୍ଧ ଭାବରେ ତାଙ୍କୁ ଅପମାନ କରିବାକୁ ସ୍ଥିର କରିଥିଲେ । ସେମାନେ ସ୍ଲୋଗାନ ଦେଉଥିଲେ, ''ମନ୍ଦିର କା ନିର୍ମାଣ କରୋ, ବାବର କା ଔଲାଦକୋ ବାହାର କରୋ ।'' ଏହିସବୁ ପାଟି ଶୁଣି ସେହି ବୃଦ୍ଧଲୋକଟିର ୧୬ ବର୍ଷର ଝିଅଟି ବାପକୁ ରକ୍ଷା କରିବା ପାଇଁ ତା' ନିକଟରେ ପହଞ୍ଚିଲା । ସେ କରସେବକମାନଙ୍କୁ ତା' ବୁଢ଼ାବାପକୁ ନ ମାରିବାକୁ ଅତି କାକୁତି ମିନତି କରି କହିଲା । କିନ୍ତୁ କରସେବକମାନେ ସେହି ଝିଅଟିର କଥା ନ ଶୁଣି, ତାକୁ ଜୋର ଜବରଦସ୍ତ କରି ଏସ୍-୬ ନମ୍ବର ବଗିକୁ ଟେକିନେଲେ ଏବଂ ବଗିର ଦୁଆରକୁ ବନ୍ଦ କରିଦେଲେ । ଟ୍ରେନ୍ ଗୋଧ୍ରା ଷ୍ଟେସନ ଛାଡ଼ି ଚାଲିବାକୁ ଆରମ୍ଭ କଲା । ବୁଢ଼ାଲୋକଟି ତା' ଝିଅକୁ ଛାଡ଼ିଦେବା ପାଇଁ ବଗି ଦୁଆର ମୁହଁକୁ ଧକ୍କାଦେଇ ଅନୁନୟ ବିନୟ କଲା । ଟ୍ରେନ୍ ସଂପୂର୍ଣ୍ଣ ଭାବରେ ପ୍ଲାଟଫର୍ମ ଛାଡ଼ିବା ପୂର୍ବରୁ ଦୁଇଜଣ ଷ୍ଟଲ ଦୋକାନୀ ଗାର୍ଡ଼ କ୍ୟାବିନ୍ ପଛରେ ଥିବା ବଗିକୁ ଡ଼େଇଁପଡ଼ି ଚଢ଼ିଗଲେ । ଏବଂ ସେମାନେ ଝିଅଟିକୁ ରକ୍ଷା କରିବା ପାଇଁ ଟ୍ରେନ୍‌ର ଚେନ୍ ଟାଣିଲେ । ଟ୍ରେନ୍ ବନ୍ଦ ହେଲା । ଟ୍ରେନ୍ ସଂପୂର୍ଣ୍ଣ ବନ୍ଦ ହୋଇ ଠିଆ ହେବା ବେଳକୁ ଏହା ଗୋଧ୍ରା ଷ୍ଟେସନଠାରୁ ପ୍ରାୟ ୧ କି.ମି. ଆସି ଯାଇଥିଲା । ସେହି ଦୋକାନୀ ଦୁଇଜଣ ଏସ୍-୬ ବଗି ନିକଟକୁ ଆସି ଦ୍ୱାର ମୁହଁରେ ଧକ୍କା ଦେଇ ଝିଅଟିକୁ ଛାଡ଼ିଦେବାକୁ ଅନୁରୋଧ କଲେ । ଏହି ଘଟଣା ଶୁଣି ଟ୍ରେନ୍ କଡ଼ରେ ରହିଥିବା ଲୋକମାନେ ଟ୍ରେନ୍ ନିକଟରେ ପହଞ୍ଚି ଯାଇଥିଲେ । ସେହି ପୁରୁଷ ଓ ସ୍ତ୍ରୀ ଲୋକମାନେ ଝିଅଟିକୁ ଛାଡ଼ିଦେବାକୁ ଅନୁରୋଧ କଲେ । କିନ୍ତୁ ଝିଅଟିକୁ ଛାଡ଼ିଦେବା ପରିବର୍ତ୍ତେ କରସେବକମାନେ ଡବାର ଝରକା ସବୁ ବନ୍ଦ କରିଦେଲେ । ଏହା ଉପସ୍ଥିତ ଜନତାକୁ ଉତ୍‌କ୍ଷିପ୍ତ କଲା ଓ ସେମାନେ ଟ୍ରେନ୍‌କୁ ଟେକା ପଥର ପକାଇଲେ ।

ଏସ୍-୬ ବଗିର ଉଭୟ ପାର୍ଶ୍ୱ ବଗିରେ ବିଶ୍ୱ ହିନ୍ଦୁ ପରିଷଦର କରସେବକ ମାନେ ଯାଉଥିଲେ । ସେମାନଙ୍କ ହାତରେ ବ୍ୟାନର ଥିଲା ଯେଉଁଥିରେ ବଡ଼ ବଡ଼ ବାଉଁଶ ଲଗାଯାଇଥିଲା । ଝିଅଟିକୁ ରକ୍ଷା କରିବା ପାଇଁ ଏକାଠି ହୋଇଥିବା ଲୋକମାନଙ୍କୁ ଏହି କରସେବକମାନେ ବାଉଁଶରେ ପିଟିବାକୁ ଲାଗିଲେ । ଏଥିରେ ଉତ୍ତ୍ୟକ୍ତ ଜନତା ଆହୁରି ରାଗିଗଲେ ଏବଂ ସେମାନଙ୍କର କ୍ରୋଧ ଭୟଙ୍କର ଆକାର ଧାରଣ କଲା । ଉତ୍ତ୍ୟକ୍ତ ଲୋକେ ନିକଟରେ ଥିବା ସିଗନାଲ ଫଡ଼ିଆ ଗ୍ୟାରେଜମାନଙ୍କରେ ଠିଆ ହୋଇଥିବା ଟ୍ରକ ଏବଂ ଅଟୋରିକ୍ସାରୁ ଡିଜେଲ ଓ ପେଟ୍ରୋଲ ଆଣି ବଗିରେ ନିଆଁ ଲଗାଇଦେଲେ । ସେମାନେ କୌଣସି ପେଟ୍ରୋଲ ପମ୍ପରୁ ପେଟ୍ରୋଲ ଆଣି ନ ଥିଲେ, କିମ୍ବା ଏହା ପୂର୍ବ

ପରିକଳ୍ପିତ ନ ଥିଲା । ଏହା ଝିଅକୁ ରକ୍ଷା କରିବାକୁ ଯାଇ ହତୋତ୍ସାହ ହୋଇ ରାଗରେ କରାଯାଇଥିଲା ।

ଏହି ଘଟଣା ଶୁଣି ବିଶ୍ୱ ହିନ୍ଦୁ ପରିଷଦର ସଭ୍ୟମାନେ ଯେଉଁମାନେ ସେହି ଅଞ୍ଚଳରେ ରହୁଥିଲେ, ସେମାନେ ସିଗ୍‌ନାଲ ଫଂଡ଼ିଆରେ ଥିବା ସମସ୍ତ ଗ୍ୟାରେଜକୁ ପୋଡ଼ିଦେଲେ ଏବଂ ସେହେରା ଭଗଦଠାରେ ଥିବା ବାଦ୍‌ଶାହ ମସ୍‌ଜିଦ୍‌କୁ ମଧ୍ୟ ପୋଡ଼ି ପକାଇଲେ । ପୁଲିସ ବହୁ ବିଳମ୍ବରେ ସେଠାରେ ପହଞ୍ଚି ନିରିହ ଲୋକମାନଙ୍କୁ ଆରେଷ୍ଟ କଲେ ଏବଂ ସେଠାକାର କଂଗ୍ରେସ ମେୟର ମିଷ୍ଟର ଅହମ୍ମଦ ହୁସେନ୍ କାଲୋଟାକୁ ଏଥିପାଇଁ ଦୋଷୀ କଲେ । କଂଗ୍ରେସ ଲୋକଙ୍କୁ ଦୋଷୀ କରିବାର ଉଦ୍ଦେଶ୍ୟ ହେଲା ସେଠାକାର କଂଗ୍ରେସକୁ ନିନ୍ଦିତ କରିବା ।

କିନ୍ତୁ ଫେବୃୟାରୀ ୨୮ ତାରିଖ ଦିନ ସକାଳୁ କୁହାଗଲା ଯେ ଏହା ପଛରେ ଆଇ.ଏସ୍.ଆଇ. ର ହାତ ରହିଚି କାରଣ ଅଯୋଧ୍ୟାରୁ ଫେରୁଥିବା କରସେବକମାନଙ୍କୁ ପୋଡ଼ିଦେବା ଥିଲା ସେମାନଙ୍କର ଚକ୍ରାନ୍ତ । ଗୁଜୁରାଟ ସରକାର ନିରପେକ୍ଷ ତଦନ୍ତ ନ କରି ଗୋଧ୍ରାଠାରେ ଥିବା ମୁସଲମାନମାନଙ୍କୁ ଆଇ.ଏସ୍.ଆଇ ଏଜେଣ୍ଟ୍ ଓ ସିମିନେତା ବୋଲି ଉଲ୍ଲେଖ କରି ଆରେଷ୍ଟ କଲେ ।

ମାର୍ଚ୍ଚ ୧ ତାରିଖ ଠାରୁ ଆରମ୍ଭ ହେଲା ସାଧାରଣ ମୁସଲମାନମାନଙ୍କର ଘର ଓ ସେମାନଙ୍କୁ ପୋଡ଼ିବା, ସେମାନଙ୍କର ସମ୍ପତ୍ତି ଲୁଟ୍ କରିବା । ସଂଘବଦ୍ଧ ନରସଂହାରର ରୂପ ନେଲା ଏବଂ ତାହା ଗୁଜୁରାଟର ବହୁ ସହରକୁ ବ୍ୟାପିଗଲା । ଏହାକୁ ଯୋଜନାବଦ୍ଧ ଭାବରେ କରାଗଲା । କାରଣ ଏହି ଘଟଣା ସହିତ ହିନ୍ଦୁତ୍ୱବାଦୀମାନଙ୍କର ଅଯୋଧ୍ୟା ଘଟଣାକୁ ଭିନ୍ନ କରି ଦେଖାଯାଇ ପାରିବ ନାହିଁ ।

## (ଖ) ଗୁଜୁରାଟ ଘଟଣା ଉପରେ ରାଜନୀତିର ପ୍ରଭାବ :

ରାମ ଜନ୍ମଭୂମି ଓ ଅଯୋଧ୍ୟାକୁ ଆଧାର କରି ରାଜନୀତି କରୁଥିବା ବିଜେପି ବିଭିନ୍ନ ରାଜ୍ୟ ନିର୍ବାଚନରେ ଶାସନ କ୍ଷମତାକୁ ନ ଆସିବା ଫଳରେ, ଆଗାମୀ ବର୍ଷ ଗୁଜୁରାଟରେ ନିର୍ବାଚନ ହେବାକୁ ଆଖି ଆଗରେ ରଖି ଗୁଜୁରାଟରେ ମୁସଲମାନଙ୍କର ନରସଂହାର ଆରମ୍ଭ କରାଗଲା । ଏବଂ ଯଦି ନିର୍ବାଚନ ହୁଏ, ତେବେ ବିଜେପି ଗଣତନ୍ତ୍ରର ନିର୍ବାଚନ ପ୍ରକ୍ରିୟାରେ କ୍ଷମତାକୁ ଫେରିବ । ଜାତୀୟ ମାନବିକ ଅଧିକାର କମିଶନ ନିଜ ରିପୋର୍ଟରେ ଉଲ୍ଲେଖ କରିଛନ୍ତି ‘‘ଗୁଜୁରାଟରେ ଯେଉଁ ନରସଂହାର କରାଗଲା, ତାହା ଗୋଧ୍ରା ଘଟଣାରୁ ଉତ୍ପନ୍ନ ନୁହେଁ । ଗୋଧ୍ରା ଘଟଣା କେବଳ ଏକ ଉପଲକ୍ଷ୍ୟ ମାତ୍ର ।’’ ବିଶ୍ୱ ହିନ୍ଦୁ ପରିଷଦ ୫୮ ଜଣ କରସେବକଙ୍କୁ ବଳି ଭାବରେ ବ୍ୟବହାର କରି ଗୁଜୁରାଟର ମୁସଲମାନମାନଙ୍କୁ ସମ୍ପୂର୍ଣ୍ଣ ଧ୍ୱଂସ କରିବାର ଏହା ଏକ

ବ୍ୟାପକ ଚକ୍ରାନ୍ତ । ଜାତୀୟ ମାନବିକ ଅଧିକାର କମିଶନ ମଧ୍ୟ ପୁନରାୟ ଉଲ୍ଲେଖ କରିଛନ୍ତି, ''ଆଗତୁରା ଯୋଜନାବଦ୍ଧ ଓ ସୁସଂହତ ଉପାୟରେ ସଂଖ୍ୟାଲଘୁ ମାନଙ୍କୁ ଆର୍ଥିକ ସଫାଇ କରିବା ।''

ଏପ୍ରିଲ୍ ୧୩ ତାରିଖ ୨୦୦୨ ଦିନ ଷ୍ଟେଟ୍‌ସ୍‌ମ୍ୟାନରେ ପ୍ରକାଶିତ ସଂବାଦ ଥିଲା ଯେ ଗୋଆଠାରେ ଅନୁଷ୍ଠିତ ହୋଇଥିବା ଜାତୀୟ କାର୍ଯ୍ୟକାରିଣୀ ବୈଠକରେ ପ୍ରଧାନମନ୍ତ୍ରୀ ଶ୍ରୀ ଅଟଳ ବିହାରୀ ବାଜପେୟୀ ସର୍ବସାଧାରଣରେ ବକ୍ତବ୍ୟ ରଖି କହିଲେ, ''ମୁସଲମାନମାନେ ଯେଉଁଠାରେ ଅଛନ୍ତି, ସେମାନେ ଶାନ୍ତିରେ ରହିବାକୁ ଚାହାଁନ୍ତି ନାହିଁ– ଶାନ୍ତି ମାଧ୍ୟମରେ ସେମାନଙ୍କର ବାର୍ତ୍ତା ଦେବା ପରିବର୍ତ୍ତେ ସେମାନେ ସନ୍ତ୍ରାସବାଦକୁ ନିଜର ଅସ୍ତ୍ରଭାବେ ବ୍ୟବହାର କରୁଛନ୍ତି ।'' ଏ ସଂପର୍କରେ ବିଶିଷ୍ଟ ଲେଖକ ସଲମନ୍ ରସ୍‌ଦି 'ଓ୍ୱାସିଂଟନ୍ ପୋଷ୍ଟ'ରେ 'ସ୍ଲଟରେ ଇନ୍ ଦି ନେମ୍ ଅଫ୍ ଗଡ୍'' ଶୀର୍ଷକ ଏକ ଅଗ୍ରଲେଖାରେ ଯାହା 'ଟାଇମସ୍ ଅଫ୍ ଇଣ୍ଡିଆ' ମାର୍ଚ୍ଚ ୧୦ ତାରିଖ ୨୦୦୨ରେ ପ୍ରକାଶିତ ହୋଇଥିଲା ଉଲ୍ଲେଖ କରିଛନ୍ତି, ''ବିଶ୍ୱ ହିନ୍ଦୁ ପରିଷଦ ଭାରତ ଗର୍ବ କରୁଥିବା ଧର୍ମ ନିରପେକ୍ଷ ଗଣତାନ୍ତ୍ରିକ ବ୍ୟବସ୍ଥାକୁ ଧ୍ୱଂସ କରିବାକୁ ଚାହେଁ । ସମ୍ଭବତଃ ବିଜେପିର ନିର୍ବାଚନରେ ପରାସ୍ତ ହେବା ଏହି ଅଗ୍ନିକଣାରୁ ନିଆଁ ସୃଷ୍ଟି ହେଲା ।''

ସବୁଠାରୁ ଲଜ୍ଜାକର ଘଟଣା ଯେ ଗୁଜୁରାଟ ମୁଖ୍ୟମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦୀ ପରୋକ୍ଷ ଭାବରେ ନରସଂହାରକୁ ସମର୍ଥନ କରି କହିଲେ, ''ପ୍ରତ୍ୟେକ କ୍ରିୟାର ସମାନୁପାତିକ ବିରୋଧ ପ୍ରତିକ୍ରିୟା ରହିବ ଏବଂ ଗୋଧ୍ରାରେ ଯେଉଁ ହତ୍ୟାହେଲା, ଗୁଜୁରାଟ ହତ୍ୟା ତାହାର ପ୍ରତିକ୍ରିୟା ମାତ୍ର ।'' ଏବଂ ନରେନ୍ଦ୍ର ମୋଦୀ ସରକାରକୁ ସାର୍ଟିଫିକେଟ୍ ଦେଇ ଗୃହମନ୍ତ୍ରୀ ଶ୍ରୀ ଏଲ୍.କେ. ଆଡ୍‌ଭାନୀ କହିଲେ, ''ସରକାର ଯେପରି ଭାବରେ ପରିସ୍ଥିତିକୁ ସମ୍ଭାଳୁଛନ୍ତି, ସେଥିରେ ମୁଁ ସନ୍ତୁଷ୍ଟ ।''

## (ଗ) ଗୁଜୁରାଟରେ ସାଂପ୍ରଦାୟିକ ହିଂସାର କାରଣ କ'ଣ ?

୧୯୯୨ ବାବ୍ରି ମସ୍‌ଜିଦ୍ ଭାଙ୍ଗିବା ପରେ ଗୁଜୁରାଟରେ ସାଂପ୍ରଦାୟିକ ଦଙ୍ଗା ଘଟିଥିଲା । ଠିକ୍ ତା'ର ୧୦ ବର୍ଷ ପରେ ପୁଣି ଥରେ ଗୁଜୁରାଟ ହିନ୍ଦୁତ୍ୱବାଦୀମାନଙ୍କ ଦ୍ୱାରା ଜଳିଲା । ଗୁଜୁରାଟରେ ଏପରି ହେବାର କାରଣ କ'ଣ ? ଗୁଜୁରାଟରେ ସାଧାରଣ ଓ ପଛୁଆ ବର୍ଗର ଲୋକମାନେ ମୁଖ୍ୟତଃ ଗୁଜୁରାଟରେ ରାଜନୈତିକ ପରିବର୍ତ୍ତନ ପ୍ରତି ନିରବଦ୍ରଷ୍ଟା ରହିଥିବା ବେଳେ କ୍ରମବର୍ଦ୍ଧିଷ୍ଣୁ ମଧ୍ୟବିତ୍ତ ଶ୍ରେଣୀ ନିଜର ସ୍ଥିତିକୁ ସୁଦୃଢ଼ କରିବାକୁ ଓ ଭବିଷ୍ୟତକୁ ସୁରକ୍ଷିତ କରିବା ପାଇଁ ନିଜର ସ୍ୱରୂପତ୍ୱ ଖୋଜିବାରେ ବ୍ୟସ୍ତ । ଏହି ସ୍ୱରୂପତ୍ୱକୁ ଖୋଜିବାର କାରଣ ଗୁଜୁରାଟରେ ଅତ୍ୟଧିକ ଉଦ୍ୟୋଗୀକରଣ ଓ ସହରୀକରଣ ଫଳରେ ଜାତିଗତ ଭିତ୍ତିରେ ଗଢ଼ିଉଠିଥିବା ସମାଜ (ବିଶେଷ କରି

ପାରମ୍ପାରିକ ଉଚ୍ଚବର୍ଗ ମଧ୍ୟରେ) ଭାଙ୍ଗି ଯିବାରେ ଲାଗିଛି ଏବଂ ଯେଉଁ ମଧ୍ୟବିତ୍ତ ଜମି ମାଲିକ ଥିଲେ, ସେମାନଙ୍କର ସ୍ଥିତି ଦୋହଲିଯାଉଛି ।

୧୯୮୦ ମସିହାରେ କ୍ଷତ୍ରିୟ-ହରିଜନ-ଆଦିବାସୀ ଓ ମୁସଲମାନ (KHAM)ର ରାଜନୈତିକ ସଫଳତା ହେତୁ ଉଚ୍ଚବର୍ଗଙ୍କ ପ୍ରତି ରାଜନୈତିକ ଓ ଅର୍ଥନୈତିକ ଭାବେ ବିପଦ ଦେଖାଦେଲା । କ୍ଷମତା 'ଉଜାଲିୟତ' (ଉଚ୍ଚବର୍ଗ) ମାନଙ୍କ ହାତରୁ ଯାଇ 'ପନ୍ଗତ' (ପଛୁଆବର୍ଗ) ମାନଙ୍କ ହାତରେ ପଡ଼ିଲା । ସେମାନେ କ୍ଷମତା ଉପଭୋଗ କରିବା ପୂର୍ବରୁ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀ ବିଶେଷ କରି ବ୍ରାହ୍ମଣ, ବଣିଆ ଏବଂ ପଟିଦାରମାନେ ୧୯୮୧ ସଂରକ୍ଷଣ ନୀତି ବିରୁଦ୍ଧରେ ଆନ୍ଦୋଳନ କଲେ ।

ଶାନ୍ତିପ୍ରିୟ, ଅହିଂସ୍ର ଏବଂ ସହିଷ୍ଣୁ ଗୁଜୁରାଟରେ ହିଂସା ତେଜିଉଠିଲା । ଅହମଦାବାଦର ଉଦ୍ୟୋଗିକ ଅଞ୍ଚଳରେ ସବର୍ଣ୍ଣ ଓ ଦଳିତମାନଙ୍କ ମଧ୍ୟରେ ଜାତିଗତ ହିଂସା ଘଟି ଗୁଜୁରାଟର ୧୮ଟି ଜିଲ୍ଲାକୁ ବ୍ୟାପିଗଲା । ୧୯୮୫ରେ ମଧ୍ୟ ଏହି ସଂରକ୍ଷଣ ବିରୋଧୀ ଆନ୍ଦୋଳନ ଘଟିଥିଲା । ଏହି ଆନ୍ଦୋଳନ ସମୟରେ ବ୍ରାହ୍ମଣ-ବଣିଆ-ପଟିଦାରଙ୍କ ମଧ୍ୟରେ ସବର୍ଣ୍ଣ ଏକତ୍ୱ ବୃଦ୍ଧି ପାଇଥିଲା । ଯାହାକୁ ବିଶ୍ୱ ହିନ୍ଦୁ ପରିଷଦ 'ହିନ୍ଦୁତ୍ୱ'ରେ ରୂପାନ୍ତରିତ କରି ପାରିଥିଲେ । ହିନ୍ଦୁମାନଙ୍କ ମଧ୍ୟରେ ଏକତା ପାଇଁ ହିନ୍ଦୁତ୍ୱ ବିଚାର । ତେଣୁ ପ୍ରଥମେ ଦଳିତମାନଙ୍କ ବିରୋଧରେ ଏହି ଘୃଣା ଓ ବିଦ୍ୱେଷ ଆରମ୍ଭ ହୋଇଥିଲେ ହେଁ ଏହା ମୁସଲମାନମାନଙ୍କ ଆଡ଼କୁ ମୁହାଁଇ ଦିଆଗଲା । ଅହମଦାବାଦ, ବରୋଦା, ସୁରଟ୍ ଏବଂ ଅନ୍ୟାନ୍ୟ ୪୦ଟି ଛୋଟ ବଡ଼ ସହରମାନଙ୍କରେ ବସବାସ କରୁଥିବା ସବର୍ଣ୍ଣ ଓ ଦଳିତ ସରକାରୀ କର୍ମଚାରୀ, ଶିକ୍ଷକ ଓ କ୍ଷୁଦ୍ର ବ୍ୟବସାୟୀଙ୍କ ମଧ୍ୟରେ ଏହି ନୂତନ ହିନ୍ଦୁ ଭାତୃତ୍ୱବୋଧକୁ ପ୍ରତିଷ୍ଠା କରାଗଲା । ପୁରାତନ ସଂସ୍କୃତି ଓ ସାମାଜିକ ବନ୍ଧନରୁ ଅଲଗା ହୋଇଯାଉଥିବା ସବର୍ଣ୍ଣ ମଧ୍ୟବର୍ତ୍ତୀ ଶ୍ରେଣୀ ଏହି ହିନ୍ଦୁତ୍ୱବାଦୀ ଆଦର୍ଶକୁ ଗ୍ରହଣ କରିନେଲେ ଏବଂ ହିନ୍ଦୁତ୍ୱ ଆଦର୍ଶ ମଧ୍ୟରେ ନିଜକୁ ସୁରକ୍ଷିତ ମନେ କଲେ ।

ହିନ୍ଦୁତ୍ୱ ଆଦର୍ଶ ତା'ର ଚେରକୁ ଗଭୀରତା ଆଡ଼କୁ ନେବାବେଳେ ନରମପନ୍ଥୀମାନଙ୍କର ସ୍ୱର କ୍ରମଶଃ କ୍ଷିଣରୁ କ୍ଷିଣତର ହେବାକୁ ଲାଗିଲା । ୧୯୯୦ ମସିହା ବେଳକୁ ଏହି ଗୋଷ୍ଠୀର ନେତାମାନଙ୍କର ଯୁବକମାନଙ୍କ ଉପରେ ଆଦୌ ପ୍ରଭାବ ରହିଲା ନାହିଁ । ତେଣୁ ଗୁଜୁରାଟରେ ଘଟିଥିବା ଲୁଟତରାଜ, ଗୃହଦାହ ଓ ହତ୍ୟାରେ ଅଧିକ ସଂଖ୍ୟକ ଯୁବକ ସାମିଲ ହେବାର ଦେଖାଯାଉଛି କାରଣ ସେହି ଯୁବକମାନେ ମନରେ ଚେତନାରେ ସଂଖ୍ୟାଲଘୁମାନଙ୍କ ପ୍ରତି ଘୃଣା ଭରି ଯାଉଥିଲା । ଆଧୁନିକ ଉଦାରବାଦୀ ଚିନ୍ତାଧାରା ଓ ସହିଷ୍ଣୁତା ପରିବେଶରୁ ସମ୍ପୂର୍ଣ୍ଣ ଭାବେ ଲୋପ ପାଇଯିବା ଦ୍ୱାରା ଏବଂ ତାହା ସେମାନଙ୍କ ଶିକ୍ଷା ବ୍ୟବସ୍ଥାରେ ଗୁରୁତ୍ୱ ଦିଆ ନ ଯିବା ଫଳରେ, ସେମାନେ ଅହିଂସା ଓ ସହିଷ୍ଣୁତା ପରି ମୂଲ୍ୟବୋଧ ପ୍ରତି ବିମୁଖ ହୋଇ ଯାଇଥିଲେ ।

୧୯୯୦ ମସିହା ପରଠାରୁ ଅହମଦାବାଦର ସାମାଜିକ ଭୌଗୋଳିକ ସ୍ଥିତିରେ ମଧ୍ଯ ପରିବର୍ତ୍ତନ ଘଟିଲା । ହିନ୍ଦୁ ଓ ମୁସଲମାନମାନଙ୍କ ମଧ୍ୟରେ ପାରସ୍ପରିକ ଆଲୋଚନା ଓ ସଂପର୍କରେ ହ୍ରାସ ଘଟିଲା । ଏପରିକି ପିଲାମାନେ ମିଳିମିଶି ଖେଳିଲେ ନାହିଁ ଏବଂ ସେମାନଙ୍କ ମଧ୍ୟରେ ସ୍ବଂପର୍କର ବନ୍ଧନ ରହିଲା ନାହିଁ । ୧୯୯୨ ମସିହାରେ ସୁରଟ୍ ସହରରେ ଏବଂ ମନସା ସହରରେ ସମୂହ ଜଳାପୋଡା ହୋଇଥିଲା । କିନ୍ତୁ ଏଥରକ ଯେଉଁ ହିଂସାକାଣ୍ଡ ଘଟିଲା, ତାହା ଭାଷାରେ କୁହାଯାଇ ପାରିବ ନାହିଁ । କେବଳ ଶିଶୁମାନଙ୍କୁ ନିଆଁକୁ ଫିଙ୍ଗି ଦିଆଗଲା ତାହା ନୁହେଁ ବରଂ ଅନ୍ତଃସତ୍ତ୍ୱା ନାରୀର ଗର୍ଭକୁ ଚିରି ଗର୍ଭସ୍ଥ ଶିଶୁକୁ ପୋଡ଼ି ଦିଆଗଲା । ନିଆଁରେ ପୋଡ଼ି ଯାଇଥିବା ମହିଳାମାନଙ୍କ ଶରୀରକୁ ଖଣ୍ଡ ଖଣ୍ଡ କରି ଉତ୍ତ୍ୟକ୍ତ ଲୋକମାନଙ୍କ ଦ୍ୱାରା କଳୁଷିତ କରାଗଲା ।

ବର୍ତ୍ତମାନର ମୁଖ୍ୟମନ୍ତ୍ରୀ ଶ୍ରୀ ନରେନ୍ଦ୍ର ମୋଦୀ ଆଡ଼ଭାନୀଙ୍କ ୧୯୯୨ ରଥ ଯାତ୍ରାର ମୁଖ୍ୟ ସ୍ଥପତି ଥିଲେ ଏବଂ ୧୯୮୫ ମସିହାଠାରୁ ବିଶ୍ୱ ହିନ୍ଦୁ ପରିଷଦର ଅଭିବୃଦ୍ଧିର ପ୍ରେରଣାର ଉତ୍ସ । ତେଣୁ ତାଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରୋତ୍ସାହନରେ, ଆଇନ ରକ୍ଷକମାନଙ୍କ ସହଯୋଗରେ ସାଂପ୍ରଦାୟିକ ନରସଂହାର ବ୍ୟାପକ ରୂପ ନେଲା । କାରଣ ସଂଘ ପରିବାର ୧୯୮୦ ମସିହାଠାରୁ ଗୈରିକୀକରଣ କରିବା ଅଭିଯାନରେ ଗୁଜରାଟକୁ ପରୀକ୍ଷାଗାର ଭାବରେ ବ୍ୟବହାର କରୁଛନ୍ତି ।

## (ଘ) ସଭ୍ୟ ସମାଜର ଦାୟିତ୍ୱ ?

ମନରେ ପ୍ରଶ୍ନ ଆସେ ଏପରି ଘଟଣା ଘଟୁଥିବା ବେଳେ ଗୁଜୁରାଟର ସଭ୍ୟସମାଜ (civil society)କ'ଣ କରୁଥିଲା ? ଏହି ହିଂସାକାଣ୍ଡ ପ୍ରମାଣ କରି ଦେଲା ଯେ ଭାରତରେ ଏପରି କୌଣସି ବ୍ୟକ୍ତି ବା ଗୋଷ୍ଠୀ ନାହିଁ, ଯାହା ନିଜର ନୈତିକ କ୍ଷମତାକୁ ଜନତା ଉପରେ ଜାହିର କରିପାରିବ । ଗାନ୍ଧି କେବଳ ଚିହ୍ନ ମାତ୍ର । ଗାନ୍ଧିଜୀଙ୍କର ସ୍ମୃତି ଓ ଉତ୍ତରାଧିକାର ସୂତ୍ରେ ପାଇଥିବା ଗୁଣ ମ୍ୟୁଜିୟମର ବସ୍ତୁ । ଗୁଜୁରାଟ ସମାଜରେ ତାଙ୍କର ସ୍ଥାନ ନେଇଛି ଜଗତୀକରଣ ସଂସ୍କୃତି । ଶିକ୍ଷାନୁଷ୍ଠାନ କେବଳ ପରୀକ୍ଷା କରିବାର ଅନୁଷ୍ଠାନ, ଡିଗ୍ରୀ ଦେବାର ଅନୁଷ୍ଠାନ । ଗୁଜୁରାଟ ସଭ୍ୟ ସମାଜରେ ସୃଷ୍ଟି ହୋଇଥିବା ଶୂନ୍ୟତାକୁ ପୂରଣ କରିବାକୁ କେହି ନାହିଁ । ସମାଜରେ ଶାନ୍ତି ସ୍ଥାପନ କରିବାର କ୍ଷମତା କେତେ କ୍ଷୀଣ ହୋଇଗଲାଣି, ତାହା ଗୁଜୁରାଟ ଘଟଣାରୁ ସ୍ପଷ୍ଟ ହୋଇଯାଇଛି । ଗୁଜୁରାଟ ଗାନ୍ଧିଜୀଙ୍କର ରାଜ୍ୟ । ଗାନ୍ଧିଜୀଙ୍କର ପ୍ରଭାବ ଆନ୍ତଃ ଓ ବାହ୍ୟ କାରଣ ହେତୁ କମିଗଲାଣି । ଚୁନି କାକା ଏବଂ ନାରାୟଣ ଭାଇ ଦେଶାଇ ପ୍ରଭୃତି ଶାନ୍ତିଯାତ୍ରା ବାହାର କଲେ ସତ, କିନ୍ତୁ ଯେଉଁ ପରିମାଣରେ ହିଂସାର ଶକ୍ତି ସଂଗଠିତ ହୋଇପାରିଛି, ସେହି ଅନୁପାତରେ ଅହିଂସାର ଶକ୍ତି ସଂଗଠିତ ନୁହେଁ । ଦେଶସାରା

ଗାନ୍ଧି ନାମରେ ବହୁସଂଗଠନ ରହିଛି । ବହୁତ ସମାଜସେବୀ ମଧ ଅଛନ୍ତି ଯେଉଁମାନେ ନିଜକୁ ଗାନ୍ଧୀବାଦୀ ବୋଲି କହୁଛନ୍ତି । କିନ୍ତୁ ସମାଜ କେବଳ ସେଇମାନଙ୍କୁ ଗାନ୍ଧିବାଦୀ ବୋଲି କହି ମାନ୍ୟତା ଦେବ ଯେଉଁମାନେ ଭୟ ସମୟରେ ଅଭୟ ଦେବାର କାର୍ଯ୍ୟ କରନ୍ତି, ହିଂସା ସମୟରେ ଅହିଂସାକୁ ପାଥେୟ କରି ଦୃଢ଼ ଭାବରେ ଛିଡ଼ା ହୋଇପାରନ୍ତି । ଗାନ୍ଧିବାଦୀମାନଙ୍କୁ ବର୍ତ୍ତମାନ ଚିନ୍ତା କରିବାର ସମୟ ଆସିଛି ସତରେ କ'ଣ କେବଳ ରଚନାତ୍ମକ କାର୍ଯ୍ୟ ସେମାନଙ୍କର ଏକମାତ୍ର କାର୍ଯ୍ୟ ?

## (ଙ) ଅର୍ଥନୀତି ଉପରେ ଏହାର ପ୍ରଭାବ :

ଗୁଜୁରାଟର ବୁଦ୍ଧିମାନ ବ୍ୟବସାୟଗୋଷ୍ଠୀ ଏହି ନରସଂହାର ସହିତ ସାମିଲ ହୋଇଛନ୍ତି । ସାଧାରଣତଃ ବ୍ୟବସାୟ କ୍ଷେତ୍ରରେ ସାଂପ୍ରଦାୟିକତାର ବାଛବିଚାର ନ ଥାଏ । ମୁସଲମାନମାନେ ଗ୍ୟାରେଜ୍, ୱାର୍କସପମାନଙ୍କରେ ସ୍ୱଳ୍ପ ମଜୁରିରେ ସାଧାରଣତଃ କାମ କରିଥାନ୍ତି । ସେମାନେ ମଧ ଲୁଗା ଓ ପୋଷାକ ପତ୍ର ଉଦ୍ୟୋଗ ମାନଙ୍କରେ ନିଜକୁ ନିୟୋଜିତ କରିଥାନ୍ତି । ଲୁଗାରେ ସୁନ୍ଦର ଧଡ଼ି ପକାଇବା, ଛୁଞ୍ଚିକାମ କରିବା ସେମାନଙ୍କର କୌଳିକ କାର୍ଯ୍ୟ । ବର୍ତ୍ତମାନ ସେମାନେ ନିଜ ନିଜ ବ୍ୟବସାୟ ସ୍ଥାନମାନଙ୍କରେ ରହୁନଥିବାରୁ ଦୈନିକ ପ୍ରାୟ ୫୦୦ କୋଟି ଟଙ୍କାର ଉତ୍ପାଦନ ହ୍ରାସ ଘଟୁଛି ।

ଗୁଜୁରାଟ ଚାମ୍ବର ଅଫ୍ କମର୍ସ ଏବଂ ଇଣ୍ଡଷ୍ଟ୍ରୀ ସମୁଦାୟ କ୍ଷୟକ୍ଷତି ସଂପର୍କରେ ଉଲ୍ଲେଖ କରି କହିଛନ୍ତି ପ୍ରାୟ ଗୋଟିଏ ସପ୍ତାହରେ ୨୫୦୦ କୋଟି ଟଙ୍କାର କ୍ଷତି ଘଟିଛି । ସେଥିମଧରୁ ୧୫୦୦ କୋଟି ବଜାର ବନ୍ଦ ହେବାଦ୍ୱାରା, ୬୫୦ କୋଟି ଉତ୍ପାଦନ ବ୍ୟାହତ ହେବା ଫଳରେ, ୧୦୦ କୋଟି ସ୍ୱଉପାର୍ଜନ କ୍ଷେତ୍ରରେ ଏବଂ ୩୦୦ କୋଟି ହୀରା ବ୍ୟବସାୟରୁ କ୍ଷତି ଘଟିଛି । ଗମନାଗମନ କ୍ଷେତ୍ରରେ ଦୈନିକ ପ୍ରାୟ ୫୦ କୋଟି ଟଙ୍କାର କ୍ଷତି ଘଟିଛି । ଗୁଜୁରାଟ ଓ ମହାରାଷ୍ଟ୍ର ବନ୍ଦରମାନଙ୍କରୁ ହେଉଥିବା ରପ୍ତାନିବାବଦ କ୍ଷତିର ଆକଳନ କରାଯାଇ ନାହିଁ । ମାର୍ଚ୍ଚ ମାସ ବ୍ୟବସାୟ ବାଣିଜ୍ୟ ପାଇଁ ଗୁରୁତ୍ୱପୂର୍ଣ୍ଣ ମାସ ହୋଇଥିଲେ ହେଁ, ଗୁଜୁରାଟ ସରକାର ରାଜନୀତି ନେଇ ବ୍ୟସ୍ତ ।

## (ଚ) ଜାତୀୟ ମାନବିକ ଅଧିକାର କମିଶନର ପ୍ରାଥମିକ ଅନୁସନ୍ଧାନ ରିପୋର୍ଟ ଏବଂ କାର୍ଯ୍ୟପନ୍ଥା ଗ୍ରହଣ ପାଇଁ ପ୍ରସ୍ତାବ :

ଜାତୀୟ ମାନବିକ ଅଧିକାର କମିଶନ ଏପ୍ରିଲ ୧ ତାରିଖରେ ଦିଲ୍ଲୀରେ ବସି ନ୍ୟାୟମୂର୍ତ୍ତି ଜେ.ଏସ୍. ବର୍ମାଙ୍କ ନେତୃତ୍ୱରେ ଗୁଜୁରାଟ ଗସ୍ତରେ ଯାଇଥିବା ଟିମ୍ ମାର୍ଚ୍ଚ ୧୯ରୁ ୨୨ ତାରିଖ ୨୦୦୨ ଯାହା ଅନୁସନ୍ଧାନ କରିଥିଲେ, ତାହାର ଏକ ରିପୋର୍ଟ

ପ୍ରସ୍ତୁତ କରି କେନ୍ଦ୍ର ସରକାରଙ୍କୁ ଦେଇଛନ୍ତି ।

ଏହି ଦଳ ଅହମଦାବାଦ, ଭାଦୋଦରା, ଗୋଧ୍ରା ଇତ୍ୟାଦି ସ୍ଥାନ ପରିଦର୍ଶନ କରିବା ସହିତ ମୁଖ୍ୟମନ୍ତ୍ରୀ, ମୁଖ୍ୟ ଶାସନ ସଚିବ, ରାଜ୍ୟ ସରକାରଙ୍କର ଅନ୍ୟାନ୍ୟ ବରିଷ୍ଠ କର୍ମକର୍ତ୍ତା, ବରେଣ୍ୟ ନାଗରିକମାନଙ୍କ ମଧ୍ୟରେ ପୂର୍ବତନ ମୁଖ୍ୟ ନ୍ୟାୟମୂର୍ତ୍ତି, ହାଇକୋର୍ଟର ବିଚାରପତି, ସିଭିଲ ସର୍ଜେଣ୍ଟ, ରାଜନୈତିକ ଦଳର ନେତୃମଣ୍ଡଳୀ, ସ୍ୱେଚ୍ଛାସେବୀ ସଂଗଠନର ପ୍ରତିନିଧି, ବ୍ୟବସାୟ ଗୋଷ୍ଠୀ, ସାଧାରଣ ନାଗରିକଙ୍କ ବ୍ୟତୀତ ହିଂସାରେ କ୍ଷତିଗ୍ରସ୍ତ ହୋଇଥିବା ଲୋକମାନଙ୍କୁ ଭେଟି ସେମାନଙ୍କ ସହିତ ଆଲୋଚନା କରିଥିଲେ ।

କମିଶନର ଉଦ୍ଦେଶ୍ୟ ଥିଲା କିପରି ଭାବରେ ହିଂସା ତୁରନ୍ତ ବନ୍ଦ ହେବ ଏବଂ ରାଜ୍ୟରେ ସାଧାରଣ ସ୍ୱାଭାବିକ ଅବସ୍ଥା ଫେରିଆସିବ । କାରଣ, କମିଶନ ସ୍ପଷ୍ଟ ଭାବରେ କହିଥିଲେ ଯେ ସେମାନଙ୍କର କାର୍ଯ୍ୟ ହେଉଛି ମାନବିକ ଅଧିକାରର ସୁରକ୍ଷା ପାଇଁ କିପରି ଉତ୍ତମ ଶାସନ ଦିଆଯାଇ ପାରିବ, ସେହି ଅବସ୍ଥାକୁ ତ୍ୱରାନ୍ୱିତ କରିବା ।

କମିଶନ ଉଲ୍ଲେଖ କରିଛନ୍ତି ଯେ ଗୁଜୁରାଟ ଘଟଣାରେ ଯେଉଁ ଦୁଃଖଦ ମୃତାହତ ଓ ଛାରଖାର ଅବସ୍ଥା ସୃଷ୍ଟି ହେଲା, ତାହା ମନୁଷ୍ୟମାନଙ୍କ ଦ୍ୱାରା ମନୁଷ୍ୟମାନଙ୍କ ଉପରେ ଅମାନୁଷିକ ଘଟଣା ଏବଂ ବ୍ୟାପକ ଭାବରେ ମାନବିକ ଅଧିକାରର ଉଲ୍ଲଂଘନ କମିଶନ ଆହୁରି ମଧ୍ୟ ଲକ୍ଷ୍ୟ କରିଛନ୍ତି ଯେ ଏହି ଦୁଃଖାବହ ଘଟଣା ସମଗ୍ର ଦେଶ ଉପରେ ଗଭୀର ପ୍ରଭାବ ପକାଇଛି ଯାହା ଫଳରେ ଏହାର ନିଜର ଆତ୍ମ ସମ୍ମାନରେ ଆଘାତ ଆସିବା ସହିତ ଅନ୍ୟ ଦେଶମାନଙ୍କ ନିକଟରେ ସମ୍ମାନହାନି ଘଟିଛି । ସଂବିଧାନର ସଠିକତା ସଂପର୍କରେ ଏବଂ ଦାୟିତ୍ୱବୋଧତା ସଂପର୍କରେ ଗଭୀର ପ୍ରଶ୍ନ ଉଠାଇଛି । ଏହା ବେସାମରିକ ଓ ରାଜନୈତିକ ଅଧିକାରର ସୁରକ୍ଷା ତଥା ଗୁଜୁରାଟ ରାଜ୍ୟର ଆର୍ଥିକ, ସାମାଜିକ ଓ ସାଂସ୍କୃତିକ ଅଧିକାର ଉପରେ ରାଷ୍ଟ୍ରବ୍ୟାପୀ ପ୍ରଭାବ ପକାଇଛି । ଏହା ବାଣିଜ୍ୟ, ପୁଞ୍ଜି ବିନିଯୋଗ, ପର୍ଯ୍ୟଟନ ଏବଂ ନିଯୁକ୍ତି କ୍ଷେତ୍ରକୁ ମଧ୍ୟ ପ୍ରଭାବିତ କରିଛି । ରାଷ୍ଟ୍ରର ରାଷ୍ଟ୍ରପତି ଓ ପ୍ରଧାନମନ୍ତ୍ରୀ ଏହି ଘଟଣା ପ୍ରତି ନିଜର କ୍ଷୋଭ ପ୍ରକାଶ କରି ଏହାକୁ ଜାତୀୟ ଲଜ୍ଜା ବୋଲି ଉଲ୍ଲେଖ କରିଛନ୍ତି । ଏବଂ ଆମ ସମସ୍ତଙ୍କ ପାଇଁ, ଏହି ଘଟଣା ସଂବିଧାନ ଦ୍ୱାରା ନାଗରିକମାନଙ୍କ ପ୍ରତି ଦିଆଯାଇଥିବା ଜୀବନ ପ୍ରତି ସ୍ୱାଧୀନତା, ସମାନତା ଓ ସମ୍ମାନତାର ଗ୍ୟାରେଣ୍ଟିରେ ଆଞ୍ଚ ଆଣିଛି, ଏହି ସବୁ କାରଣ ହେତୁ କମିଶନ ନିରବଚ୍ଛିନ୍ନ ଭାବେ ଉଦ୍‌ବେଗ ପ୍ରକାଶ କରୁଛି ।

୬ ମାର୍ଚ୍ଚ ୨୦୦୨ ତାରିଖ କାର୍ଯ୍ୟ ବିବରଣୀରେ କମିଶନ ଉଲ୍ଲେଖ କରିଛନ୍ତି ଯେ ଗଣମାଧ୍ୟମରେ ଯେଉଁ ରିପୋର୍ଟ ପ୍ରକାଶ ପାଉଛି ତାହା ଅତ୍ୟନ୍ତ ଦୁର୍ଭାଗ୍ୟଜନକ ଏବଂ ଏଥିରେ କୁହାଯାଉଛି ଯେ ଶାସନ କୌଣସି ପଦକ୍ଷେପ ଗ୍ରହଣ କରିନାହାନ୍ତି ।

ଗଣମାଧ୍ୟମ ରିପୋର୍ଟରେ ପୁଲିସ କମିଶନର ଓ ମୁଖ୍ୟମନ୍ତ୍ରୀଙ୍କର କେତେକ ବକ୍ତବ୍ୟକୁ ଉଲ୍ଲେଖ କରାଯାଇଛି ଏବଂ ଯଦି ଏହା ସତ୍ୟ ହୋଇଥାଏ, ତେବେ ବାଛବିଚାର ଏବଂ ମାନବିକ ଅଧିକାର କ୍ଷୁର୍ଣ୍ଣ ହେବା ସଂପର୍କରେ ଏହା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ଉଠାଉଛି । କମିଶନ ଗୋଧ୍ରା ଟ୍ରାଜେଡ଼ି ପରେ ଯେପରି ଭାବରେ ମୃତାହତ ଓ ଛାରଖାର ହେଲା ତାହା ଇନଟେଲିଜେନ୍ସିର ବିଫଳତା ଓ ରାଜ୍ୟ ସରକାରଙ୍କର ପଦକ୍ଷେପ ନ ନେବାଦ୍ୱାରା ଘଟିଲା ବୋଲି ଉଲ୍ଲେଖ କରିଛନ୍ତି ।

କମିଶନ ନିମ୍ନମତେ ଆଇନ ଶୃଙ୍ଖଳା, ରିଲିଫ୍ କ୍ୟାମ୍ପ, ଥଇଥାନ ବ୍ୟବସ୍ଥା ଓ ପୁଲିସ୍ ବାହିନୀର ସଂସ୍କାର ସଂପର୍କରେ ସୁପାରିଶ କରିଛନ୍ତି ।

(୧) ଅଭିଯୋଗ କରାଯାଇଛି ଯେ ବହୁକ୍ଷେତ୍ରରେ ଏଫ୍ ଆଇ ଆର (ପ୍ରାଥମିକ ତଥ୍ୟ ରିପୋର୍ଟ) ସଠିକ୍ ଭାବେ ଲେଖାଯାଇନି କିମ୍ବା ଉପରଠାଉରିଆ ଭାବେ ଲେଖାଯାଇଛି । ଏହା ବିଭିନ୍ନ ବାହ୍ୟ ବିଚାର ଓ ପ୍ରଭାବ ଦ୍ୱାରା କରାଯାଇଛି । ଯେଉଁ ସବୁ ଗୁରୁତ୍ୱପୂର୍ଣ୍ଣ କେଶ୍ ଅଛି, ତାହାକୁ ସିବିଆଇକୁ ଦିଆଯାଉ ।

(୧) (କ) ଗୋଧ୍ରା ଘଟଣା ଯାହାକୁ ବର୍ତ୍ତମାନ ଜିଆରପି ଅନୁସନ୍ଧାନ କରୁଛନ୍ତି ।
(ଖ) ଚମନପୁରା (ଗୁଲବର୍ଗା) ସୋସାଇଟି ଘଟଣା ।
(ଗ) ନାରୋଦା ପଟିୟା ଘଟଣା ।
(ଘ) ଭଦୋଦରାର ବେଷ୍ଟ ବେକେରୀ କେସ୍
(ଙ) ମେହସାନା ଜିଲ୍ଲାର ସଦରପୁରା ଘଟଣା ।

(୨) ଏଥିପାଇଁ ସ୍ପେଶାଲ କୋର୍ଟ ବସି ଦୈନନ୍ଦିନ ଏହି କେଶ୍‌ଗୁଡ଼ିକୁ ବିଚାର କରନ୍ତୁ ଏବଂ ଏହାର ଜଜ୍ ଗୁଜୁରାଟ ହାଇକୋର୍ଟର ମୁଖ୍ୟ ବିଚାରପତିଙ୍କ ଦ୍ୱାରା ସ୍ଥିର ହୁଅନ୍ତୁ । ମହିଳା ଓ ଶିଶୁ ଯେଉଁମାନେ ଏହାଦ୍ୱାରା ଅତିମାତ୍ରାରେ ଭୟଭୀତ ଅବସ୍ଥାରେ ରହିଛନ୍ତି, ସେମାନଙ୍କର ଅବସ୍ଥା ଯେପରି ଅଧିକ ଖରାପ ନ ହୁଏ, ସେଥିପ୍ରତି ଧ୍ୟାନ ଦିଆଯାଉ ।

(୩) ଜିଲ୍ଲାମାଜିଷ୍ଟ୍ରେଟ୍‌ଙ୍କ ଅଧୀନରେ ବିଶେଷ ସେଲ୍ ଗଠନ କରାଯାଇ ଯେଉଁଗୁଡ଼ିକ କେସ୍ ଆଡ଼ିସିନାଲ ଡାଇରେକ୍ଟର ଜେନେରାଲଙ୍କ ଦ୍ୱାରା ଅନୁସନ୍ଧାନ କରାଯାଉଛି, ତାହାର ତଦାରଖ କରାଯାଉ ।

(୪) ଏହି ଅନୁସନ୍ଧାନଗୁଡ଼ିକୁ ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ଶେଷ କରାଯାଉ ।

(୫) ବିଭିନ୍ନ ସ୍ୱେଚ୍ଛାସେବୀ ସଂଗଠନମାନଙ୍କ ଦ୍ୱାରା ସଂଗ୍ରହ କରାଯାଇଥିବା ତଥ୍ୟକୁ ଉପଯୋଗ କରାଯାଉ ।

(୬) ରିଲିଫ୍‌କ୍ୟାମ୍ପ ମାନଙ୍କରେ ପୁଲିସ୍ ଚୌକି ବସାଯାଇ ଅଭିଯୋଗ, ଏଫ୍. ଆଇ.ଆର. ନେବାର ବ୍ୟବସ୍ଥା ହେଉ ଏବଂ ସେହି ଅନୁସାରେ ସେଗୁଡ଼ିକୁ

ନିର୍ଦ୍ଦିଷ୍ଟ ପୁଲିସ୍ ଷ୍ଟେସନମାନଙ୍କୁ ପଠାଯାଉ ।

(୭) ବିଭିନ୍ନ ଗଣମାଧ୍ୟମକୁ ଯେଉଁସବୁ ଉତ୍ତେଜନାମୂଳକ ବକ୍ତବ୍ୟ ବିଭିନ୍ନ ବ୍ୟକ୍ତି ବିଶେଷଙ୍କ ଦ୍ୱାରା ଦିଆଯାଉଛି । ତାହାକୁ ପରୀକ୍ଷା କରାଯାଇ ତା' ଉପରେ କାର୍ଯ୍ୟାନୁଷ୍ଠାନ ହେଉ ।

(୮) ଯେଉଁ ସରକାରୀ ଅଧିକାରୀମାନେ ଘଟଣା ପରେ ସଠିକ୍ ଭାବରେ କାର୍ଯ୍ୟ କରିନାହାନ୍ତି, ସେମାନଙ୍କୁ ଚିହ୍ନଟ କରି ଦଣ୍ଡ ଦିଆଯାଉ ଏବଂ ଉତ୍ତମ କାର୍ଯ୍ୟ କରିଥିବା ଅଧିକାରୀମାନଙ୍କୁ ପ୍ରଶଂସା ପତ୍ର ଦେବାର ବ୍ୟବସ୍ଥା ହେଉ ।

**ରିଲିଫ କ୍ୟାମ୍ପ :**

(୧) ଦଙ୍ଗା କ୍ଷତିଗ୍ରସ୍ତ ଲୋକମାନଙ୍କର ଆତ୍ମବିଶ୍ୱାସ ଫେରାଇ ଆଣିବା ପାଇଁ ରାଜନୈତିକ ନେତୃମଣ୍ଡଳୀ ଓ ବରିଷ୍ଠ ଅଧିକାରୀମାନେ କ୍ୟାମ୍ପ ପରିଦର୍ଶନ କରନ୍ତୁ । ସ୍ୱେଚ୍ଛାସେବୀ ସଂଗଠନମାନଙ୍କୁ ସେନା ସହିତ ଅନ୍ତର୍ଭୁକ୍ତ କରାଯାଉ ଏବଂ କ୍ୟାମ୍ପ ପରିଚାଳନାରେ ପରିଚ୍ଛନ୍ନତା ଏବଂ ଉତ୍ତର ଦାୟିତ୍ୱ ରଖାଯାଉ ।

(୨) ବିଭିନ୍ନ କ୍ୟାମ୍ପର ଦାୟିତ୍ୱକୁ ସେକ୍ରେଟାରୀ ବା ତର୍ଦ୍ଧ୍ୱ ଅଧିକାରୀମାନଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ପରିଚାଳିତ କରାଯାଉ ।

(୩) ଇନସ୍ୟୁରାନ୍ସ ଏବଂ କମ୍ପାନସେସନ୍‌ର ଦାବିଗୁଡ଼ିକ ପ୍ରତି ଅଗ୍ରାଧିକାର ଦିଆଯାଇ ତା'ର ଫଇସଲା କରାଯାଉ ଏବଂ ମୁଖ୍ୟମନ୍ତ୍ରୀ ଇନ୍‌ସ୍ୟୁରାନ୍ସ କମ୍ପାନିମାନଙ୍କୁ ଚିଠି ଲେଖନ୍ତୁ ।

(୪) କ୍ୟାମ୍ପର ଥିବା ଅଧିବାସୀମାନଙ୍କୁ ସମ୍ପୂର୍ଣ୍ଣ ଭାବରେ ଥଇଥାନ ଓ ସୁରକ୍ଷା ନ ଦେଇ କ୍ୟାମ୍ପରୁ ବାହାର କରା ନ ଯାଉ ।

**ଥଇଥାନ ବ୍ୟବସ୍ଥା :**

(୧) ଯେଉଁ ଯେଉଁ ଧାର୍ମିକ ସ୍ଥଳଗୁଡ଼ିକ ଭାଙ୍ଗି ଦିଆଯାଇଛି, ତାହା ରାଜ୍ୟ ସରକାରଙ୍କ ଦ୍ୱାରା ତୁରନ୍ତ ମରାମତି କରାଯାଉ ।

(୨) ଯେଉଁମାନଙ୍କର କ୍ଷୟକ୍ଷତି ଘଟିଛି, ସେମାନଙ୍କୁ କ୍ଷତି ପୂରଣ ଦିଆଯାଉ । ଏଥିପାଇଁ ହୁଡ୍‌କୋ, ଏଚ.ଡ଼ି.ଏଫ୍.ସି. ଓ ଅନ୍ୟାନ୍ୟ ଆର୍ଥିକ ସଂସ୍ଥାର ସହଯୋଗ ନିଆଯାଉ ।

(୩) ଘରୋଇ ଉଦ୍ୟୋଗ ବିଶେଷକରି ଔଷଧର ଉଦ୍ୟୋଗ ଗୁଡ଼ିକ ଏଥିରେ ସହଯୋଗ ପାଇଁ ବ୍ୟବସ୍ଥା ହେଉ ।

(୪) ସ୍ୱେଚ୍ଛାସେବୀ ସଂଗଠନମାନଙ୍କର ଭୂମିକା ପ୍ରତି ଗୁରୁତ୍ୱ ଆରୋପ କରାଯାଇ ସେମାନଙ୍କୁ ଏଥିରେ ସାମିଲ କରାଯାଉ ।

(୫) ନିରାଶ୍ରୟ ମହିଳା, ଅନାଥ ଶିଶୁ ଓ ଯୌନ ନିର୍ଯ୍ୟାତିତ ମହିଳା ମାନଙ୍କୁ ଚିହ୍ନଟ କରାଯାଇ ସେମାନଙ୍କ ପାଇଁ ବିଶେଷ ପଦକ୍ଷେପ ନିଆଯାଉ ।

(୬) ପ୍ରଚାର ମାଧମକୁ ଏହି କାର୍ଯ୍ୟରେ ସହଯୋଗ ପାଇଁ ଅନୁରୋଧ କରାଯାଉ ।

**ପୁଲିସ ସଂସ୍କାର :**

ପୁଲିସ୍ କାର୍ଯ୍ୟରେ ନିରପେକ୍ଷତା ଓ ଅନୁସନ୍ଧାନରେ ସତ୍ୟତା ଅବଲମ୍ବନ ପାଇଁ ଜାତୀୟ ପୁଲିସ କମିଶନ ଓ ଜାତୀୟ ମାନବିକ ଅଧିକାର କମିଶନ ରିପୋର୍ଟ ଭିତ୍ତିରେ ପୁଲିସର ସଂସ୍କାରକୁ ତ୍ୱରାନ୍ୱିତ କରାଯାଉ ।

## (ଛ) ଗୁଜୁରାଟ ହିଂସାର ପ୍ରଭାବ ଏବଂ କାରଣ :

ରାଜନୀତି ଯେତେବେଳେ ସାଂପ୍ରଦାୟିକ ରଂଗରେ ପୂରାପୂରି ବୁଡ଼ିଯାଏ, ରାଜ୍ୟର ଶାସନତନ୍ତ୍ର ତା'ର ଉର୍ଦ୍ଧ୍ୱକୁ ନ ଉଠି ସେଥିରେ ନିମଜ୍ଜିତ ହୋଇଯିବାର ଦେଖାଯାଏ, ସେତେବେଳେ ସ୍ୱାଭାବିକ ଭାବରେ ଯୁକ୍ତି, ତଥ୍ୟ, ତା'ର ପର୍ଯ୍ୟାଲୋଚନା ଇତ୍ୟାଦି ରାଜନୈତିକ ଏବଂ ସାଂପ୍ରଦାୟିକ ଦୃଷ୍ଟିରେ ପ୍ରଭାବିତ ହୁଏ । ସତ୍ୟ ଉପରେ ଆଧାର କରି ବିଶ୍ଳେଷଣ ହୁଏନି କିମ୍ବା ତଥ୍ୟ ଉପରେ ଆଧାର କରି ଯୁକ୍ତି ହୁଏନାହିଁ ।

ଗୋଧ୍ରା ଘଟଣାକୁ ଉପରୋକ୍ତ ଦୃଷ୍ଟିରୁ ବିଚାର କରିବା । କେତେକ ହିନ୍ଦୁ ବୁଦ୍ଧିଜୀବୀଙ୍କ ମତରେ ଗୋଧ୍ରା ଘଟଣା ବହୁ ପ୍ରାଚୀନ ମୁସଲମାନ ମୌଳବାଦ ଏବଂ ସନ୍ତ୍ରାସବାଦର ଅନ୍ୟ ଏକ ରୂପ ନେଇଛି । କାରଣ ଏହା ସେପ୍ଟେମ୍ବର ୧୧ ଆମେରିକାର ବିଶ୍ୱ ବାଣିଜ୍ୟ ସଂଗଠନ ଓ ପେଣ୍ଟାଗନର ଧ୍ୱଂସ ପରେ ଏବଂ ଡ଼ିସେମ୍ବର ୧୩, ୨୦୦୧ ପାର୍ଲାମେଣ୍ଟ ଉପରେ ଆକ୍ରମଣ ପରେ ଘଟିଛି । ତେଣୁ ଗୋଧ୍ରାରେ ଯାହା ଘଟିଲା ସେଥିରେ ମୁସଲମାନ ସନ୍ତ୍ରାସବାଦୀମାନଙ୍କ ଦ୍ୱାରା ଯୋଜନାବଦ୍ଧ ଭାବେ ଏବଂ ପାକିସ୍ଥାନର ପୃଷ୍ଠପୋଷକତାରେ ବଢୁଥିବା ଆଇ.ଏସ୍. ଆଇ. ଏବଂ ତାଙ୍କର ସ୍ଥାନୀୟ ସହଯୋଗୀମାନଙ୍କ ଦ୍ୱାରା ଘଟିଛି । ତେଣୁ ପରବର୍ତ୍ତୀ ସମୟରେ ହିଂସା ଏହାର ପ୍ରତିକ୍ରିୟା ମାତ୍ର । ତେଣୁ ଏହି ପ୍ରତିକ୍ରିୟା ସଠିକ୍ ବୋଲି କହି ଗୋଟିଏ ଆଖି ବଦଳରେ ଗୋଟିଏ ଆଖି ଏବଂ ଗୋଟିଏ ଦାନ୍ତ ନ ହୋଇ ଗୋଟିଏ ଆଖି ବଦଳରେ ଉଭୟ ଆଖି, ଗୋଟିଏ ଦାନ୍ତ ବଦଳରେ ସବୁ ଦାନ୍ତ ଉପାଡ଼ି ଦେବା ଯଥାର୍ଥ ଏବଂ ଏଥିରୁ ହିନ୍ଦୁମାନଙ୍କର ପୁରୁଷପଣିଆ ବୁଝାପଡ଼ିଛି । ଏ ଘଟଣା ଘଟିଛି କାରଣ ମୁସଲମାନ ମାନେ ଓ ବିରୋଧୀ ଦଳ ଏ ଘଟଣାକୁ ନିନ୍ଦା କରି ନାହାନ୍ତି ଏବଂ ପ୍ରଚାର ମାଧମ ଏକପାଖିଆ ପ୍ରଚାର କରିଛି ।

ସେହି ଘଟଣାକୁ ମୁସଲମାନ ବୁଦ୍ଧିଜୀବୀମାନେ ଭିନ୍ନ କରି ଦେଖୁଛନ୍ତି । ଏହା ଦ୍ୱାରା ମୁସଲମାନମାନଙ୍କୁ ସଂଘବଦ୍ଧ ଭାବରେ ହତ୍ୟା କରାଯାଇଛି, ଭଙ୍ଗାରୁଜା କରି

ଛାରଖାର କରିଦିଆଯାଇଛି । ଏହା ଇସଲାମ ଓ ମୁସଲମାନଙ୍କ ବିରୋଧରେ ପୂର୍ବକଳ୍ପିତ ଷଡଯନ୍ତ୍ର । ସଭ୍ୟତାର ଯେଉଁ ସଂଘର୍ଷ ହେଉଛି ଏହା ତାହାର ଅଂଶବିଶେଷ । ଏହା ଆନ୍ତର୍ଜାତୀୟ ଷଡଯନ୍ତ୍ରର ଅଂଶ ମାତ୍ର । ଆଉ କେତେକଙ୍କ ବିଚାରରେ ଦୀର୍ଘ ଏକ ହଜାର ବର୍ଷ ଧରି ମୁସଲମାନ କରିଥିବା ଶାସନର ପ୍ରତିହିଂସା ସ୍ୱରୂପ ହିନ୍ଦୁତ୍ୱବାଦୀମାନେ ଭାରତର କୋଡିଏ କୋଟି ଲୋକଙ୍କୁ ସମ୍ପୂର୍ଣ୍ଣ ବିନାଶ କରିଦେବାକୁ ଚାହାଁନ୍ତି କିମ୍ବା ସେମାନଙ୍କୁ କ୍ରୀତଦାସ ପରି ରଖିବାର ଏହା ଏକ ସୁପରିକଳ୍ପିତ ଷଡଯନ୍ତ୍ର । ସେମାନେ ବିଚାର କରନ୍ତି ଯେ ଗୋଧ୍ରା ଘଟଣା ହିଂସା ସୃଷ୍ଟି କରିବା ପାଇଁ ଏକ ମାଧ୍ୟମ ହୋଇଛି ଯଦିଓ ବହୁ ପୂର୍ବରୁ ଏହା କରାଯିବା ପାଇଁ ଯୋଜନା କରାଯାଇଛି । ନିଜେ ରାଜ୍ୟ ଏଥିରେ ସାମିଲ ହୋଇଛି କିମ୍ବା ସହଯୋଗୀ ସାଜିଛି ଏବଂ ମୁସଲମାନମାନଙ୍କର ଜୀବନ ଉପରେ ଆର୍ଥିକ ଅବସ୍ଥା ଉପରେ, ଆତ୍ମ-ସମ୍ମାନ ଉପରେ ଏବଂ ଧାର୍ମିକ ଓ ସାଂସ୍କୃତିକ ଏକତ୍ୱ ଉପରେ ଆକ୍ରମଣ କରିଛି ।

ଏହି ଉଭୟ ମତ ମଧ୍ୟରେ ଅନେକ ପାର୍ଥକ୍ୟ ରହିଥିଲେ ମଧ୍ୟ ଏହାର ପ୍ରଭାବ ହୋଇଛି ପରସ୍ପର ପରସ୍ପର ମଧ୍ୟରେ ଘୃଣାର ପ୍ରଚାର ଏବଂ ସାଂପ୍ରଦାୟିକ ଢ଼ଙ୍ଗରେ ଗଠବନ୍ଧନ । ଏହା ବ୍ୟତୀତ ଗୋଧ୍ରା ଘଟଣା ସଂପର୍କରେ ଆଉ ଗୋଟିଏ ମତ ମଧ୍ୟ ପ୍ରକାଶ ପାଇଛି । ଏହା ଭାରତର ବିଭିନ୍ନ ପ୍ରାନ୍ତରର ବୁଦ୍ଧିଜୀବୀମାନଙ୍କର ମତ । ଭାରତରେ ରହୁଥିବା ମୁସଲମାନମାନେ ଭାରତର ନାଗରିକ । ଫଳରେ ନାଗରିକ ଅଧିକାର ଓ ମାନବିକ ଅଧିକାରକୁ ଉଲ୍ଲଘଂନ କରାଯାଇଛି । ଏବଂ ଏହି ଅଧିକାରକୁ ଖର୍ଣ୍ଣ କରିବାରେ ଗୁଜୁରାଟ ରାଜ୍ୟ ସରକାର ଓ କେନ୍ଦ୍ର ସରକାର ଦାୟୀ । ସେମାନେ ଏହି ହିଂସାକୁ ଜାତୀୟ ରାଜନୀତି ଦୃଷ୍ଟିରୁ ବିଚାର କରିଛନ୍ତି ।

ଗୁଜୁରାଟର ଏହି ହିଂସାକୁ ଆମେ ଜାତୀୟ ରାଜନୀତି ଦୃଷ୍ଟିରୁ ବିଚାର କରିବା । ଦେଶରେ ଯେଉଁ ରାଜନୈତିକ ଓ ଅର୍ଥନୈତିକ ସମସ୍ୟା ଦେଖା ଦେଇଛି ତାହାର କାରଣ ଓ ଫଳାଫଳ ଜଗତୀକରଣ, ପ୍ରଭୁତ୍ୱକରଣ ଓ ସାଂପ୍ରଦାୟକୀକରଣ ଯୋଗୁଁ ହିଁ ଘଟୁଛି । ଅର୍ଥନୀତି ଓ ରାଜନୀତି ମଧ୍ୟରେ ବର୍ତ୍ତମାନ ଯେଉଁ ବିରୋଧାଭାସ ଦେଖାଦେଇଛି, ତାହା ସାଂପ୍ରଦାୟିକତାକୁ ବୃଦ୍ଧି କରିବାରେ ସହାୟକ ହୋଇଛି ଏବଂ ତାହା ଲୋକମାନଙ୍କ ମଧ୍ୟରେ ଉତ୍ତେଜନା ସୃଷ୍ଟି କରିବାର ଏକ ପଳାୟନ ମାର୍ଗ ପାଲଟି ଯାଇଛି । ଏଥିଯୋଗୁଁ ଶାସକଗୋଷ୍ଠୀ ନିଜକୁ ଉଶ୍ୱାସ ମାରୁଛନ୍ତି ଏବଂ କେତେକ ସଂଖ୍ୟାର ଭୋଟ ରାଜନୀତିରେ ନିର୍ବାଚିତ ହୋଇ ବିଜୟରେ ଉଲ୍ଲସିତ ହେଉଛନ୍ତି ।

ଗୁଜୁରାଟର ବର୍ତ୍ତମାନର ହିଂସା ଜଗତୀକରଣ, ପ୍ରଭୁତ୍ୱୀକରଣ ଓ ସାଂପ୍ରଦାୟିକୀ କରଣର ସମ୍ମିଳିତ ସଂଗମ ପାଲଟି ଯାଇ ତା'ର କୁତ୍ସିତ ମୁଖକୁ ଦେଖାଇଛି । ଦୀର୍ଘ ଦୁଇ ଦଶନ୍ଧି ଧରି ଜଗତୀକରଣ ଅର୍ଥନୀତି ଯେଉଁ ଗଭୀର ସମସ୍ୟା ସୃଷ୍ଟି କରିଛି,

ସେଥିରେ ଅହମଦାବାଦର ୫୦ଟି ଲୁଗାକଳ ବନ୍ଦ ହୋଇ ଯାଇଛି ଏବଂ ଲକ୍ଷେ ଶ୍ରମିକ ବେକାର ହୋଇଯାଇଛନ୍ତି । ସେମାନେ ବଞ୍ଚିବା ପାଇଁ ଦିନ ମଜୁରିଆ ପାଲଟି ଯାଉଛନ୍ତି ।

ଭାରତର ରାଜ୍ୟମାନଙ୍କ ମଧ୍ୟରେ ଗୁଜୁରାଟ ଶାସନ ପ୍ରଭୁତ୍ୱୀକରଣ ପ୍ରତି ବେଶୀ ସଚେଷ୍ଟ; କାରଣ, ଏହା ଜନସାଧାରଣଙ୍କର ଅଧିକାର ପାଇଁ ଆନ୍ଦୋଳନ ଉପରେ ଟାଡା ଓ ପୋଟା ପରି ଆଇନ୍ ଲାଗୁ କରିବାକୁ କୁଣ୍ଠାବୋଧ କରନ୍ତି ନାହିଁ । ୧୯୮୦ ଓ ୧୯୯୦ରେ ଟାଡା ଆଇନ୍ ବଳରେ ଗୁଜୁରାଟରେ ସର୍ବାଧିକ ଆରେଷ୍ଟ ହୋଇଥିଲା । ଯେଉଁପରି ଭାବରେ ଟାଡା ଆଇନ୍‌କୁ ଲାଗୁ କରାଯାଇଥିଲା ସେଥିରୁ ମୁସଲମାନମାନେ ଅପରାଧୀ ଏବଂ ସନ୍ତ୍ରାସବାଦୀ ଭାବରେ ରୂପ ଦିଆଯାଇଛି । ତେଣୁ ନରେନ୍ଦ୍ର ମୋଦୀ ଗୋଧ୍ରା ସାବରମତୀ ଟ୍ରେନ୍ ହିଂସା ପାଇଁ ପୋଟୋ ଆଇନ୍ ଲାଗୁ କରିବାକୁ ଚାହିଁଥିବା ବେଳେ ପରବର୍ତ୍ତୀ ନରସଂହାର ପାଇଁ ଏଫ୍.ଆଇ.ଆର. ଗ୍ରହଣ କରିବାକୁ ପଛେଇଛନ୍ତି । ଅବଶ୍ୟ ଏହା ବିରୋଧରେ ପ୍ରତିବାଦ ହେବାବେଳେ ପୋଟୋ ଆଇନ୍‌କୁ ଲାଗୁ କରିନାହାନ୍ତି ।

ସଂଘ ପରିବାର ୧୯୮୦ ମସିହାରୁ କ୍ରମାଗତ ଭାବେ ଗୁଜୁରାଟକୁ ଗୈରୀକୀକରଣ କରିବାର ପରୀକ୍ଷାଗାର ଭାବେ ବ୍ୟବହାର କରିଛନ୍ତି । କ୍ରମାଗତ ଭାବେ ଏବଂ ଯୋଜନାବଦ୍ଧ କ୍ରମରେ ସଂଘ ପରିବାର ଗୁଜୁରାଟୀ ସମାଜ ବ୍ୟବସ୍ଥା ଭିତରେ ଏପରି ନିଜର ଆଭିମୁଖ୍ୟକୁ ମଜବୁତ କରି ଚାଲିଛନ୍ତି ଯେ ଯାହାର ପ୍ରଭାବ ସୁଦୂରପ୍ରସାରୀ । ମହିଳାମାନଙ୍କର ଅଧିକାର ପାଇଁ ଆନ୍ଦୋଳନ, ଆଦିବାସୀମାନଙ୍କର ସ୍ୱତନ୍ତତା, ଶ୍ରମିକମାନଙ୍କର ଅଧିକାର, ବେସାମରିକ ସ୍ୱାଧୀନତା ଏବଂ ମାନବିକ ଅଧିକାର ଆନ୍ଦୋଳନ ଇତ୍ୟାଦି ମୁସଲମାନ ବିରୋଧୀ ଓ ଖ୍ରୀଷ୍ଟିୟାନ ବିରୋଧୀ ହାଓ୍ୱା ଭିତରେ କୁଆଡ଼େ ହଜିଯାଇଛି । କ୍ରମାଗତ ଭାବେ ଆଦିବାସୀ, ମଧ୍ୟବିତ୍ତ ଶ୍ରେଣୀ, ମହିଳାମାନଙ୍କୁ ହିନ୍ଦୁତ୍ୱ ଆଦର୍ଶ ଭିତରକୁ ଆଣି ସେମାନଙ୍କୁ ସାମାଜିକ ଯାନ୍ତ୍ରୀକରଣ କରାଯାଇଛି । ଦୀର୍ଘ ଦୁଇ ଦଶନ୍ଧି ଧରି ସେମାନଙ୍କର ଶକ୍ତିକୁ ଏବଂ ସମର୍ଥନ ଶକ୍ତିକୁ ଏପରି ବଢ଼ାଯାଇଛି ଯେ ସେମାନେ ସରକାର, ଶାସନ ଓ ପୁଲିସକୁ ମଧ୍ୟ ସାଂପ୍ରଦାୟିକ ଗୋଷ୍ଠୀରେ ବିଭକ୍ତ କରିଦେଇଛନ୍ତି । ତେଣୁ ଗୁଜୁରାଟରେ ଶାନ୍ତି, ବିବିଧତା, ଧର୍ମନିରପେକ୍ଷତା, ସାଂବିଧାନିକ ଗଣତନ୍ତ୍ର ପ୍ରତି ଆସ୍ଥା ଉପରେ ମରଣ ଘଣ୍ଟା ବାଜୁଛି ।

## (ଜ) ଦଙ୍ଗାର ଆନୁଷ୍ଠାନୀକରଣ :

ଗୁଜୁରାଟ ୨୦୦୨ ଦଙ୍ଗାକୁ ଦଙ୍ଗା ବ୍ୟବସ୍ଥାର ଆନୁଷ୍ଠାନୀକରଣ କହିଲେ ଭୁଲ ହେବ ନାହିଁ । ସଂଘ ପରିବାରର ରାଜ୍ୟସ୍ତରର ଓ ରାଷ୍ଟ୍ରସ୍ତରର ନେତାମାନେ ଏହି ଜଘନ୍ୟ ନରସଂହାରକୁ ଗୋଧ୍ରା ପୋଡ଼ିର ପ୍ରତିକ୍ରିୟା ବୋଲି ବାରମ୍ବାର ଉଲ୍ଲେଖ କରିଛନ୍ତି ।

ସେମାନେ ଏପରି ହିଂସା ଘଟିବା ପାଇଁ କେବଳ ସୁଯୋଗ ଅପେକ୍ଷାରେ ଥିଲେ ଏବଂ ଦଙ୍ଗାକାରୀ ଉତ୍ତ୍ୟକ୍ତ ଜନତାଙ୍କ ନିକଟରେ ମୁସଲମାନମାନଙ୍କର ଘର ଓ ବ୍ୟବସାୟ ଠିକଣାକୁ ସେମାନେ ଚିହ୍ନଟ କରି, ତା' ଉପରେ ଆକ୍ରମଣ କରିଥିଲେ । ବିଜେପି, ବିଶ୍ୱ ହିନ୍ଦୁ ପରିଷଦ ଓ ବଜରଙ୍ଗ ଦଳର ନେତାମାନେ ନିଜ ନିଜର ମୋବାଇଲ୍ ଟେଲିଫୋନ୍ ଯୋଗେ ଦଙ୍ଗାକୁ ପରିଚାଳନା କରୁଥିଲେ । ପ୍ରଥମେ ଟ୍ରକରେ ଲଦାହୋଇ ଦଳେ ଆସି ସ୍ଲୋଗାନ ଦେଉଥିଲେ । ଉତ୍ତେଜିତ ସ୍ଲୋଗାନ ଦେଇ ଫେରିଯିବାପରେ, ଆଉ ଦଳେ ଦଙ୍ଗାକାରୀ ଟ୍ରକ୍‌ରେ ଆସି ହିଂସାରେ ମାତି ଯାଉଥିଲେ । ରନ୍ଧନ ଗ୍ୟାସକୁ ଫିଙ୍ଗି ନିଆଁ ବିଚ୍ଛୁରଣ କରୁଥିଲେ । 'ସନ୍ଦେଶ' ଓ 'ଗୁଜୁରାଟ ସମାଚାର' ପରି ଆଞ୍ଚଳିକ ସମ୍ବାଦପତ୍ର ଅସତ୍ୟ ତଥ୍ୟ ପରିବେଷଣ କରି ଉତ୍ତେଜନା ବୃଦ୍ଧିରେ ସାହାଯ୍ୟ କରୁଥିଲେ । ଉତ୍ତେଜନା ସୃଷ୍ଟିଧର୍ମୀ ପଚାର ପତ୍ର ବଣ୍ଟା ଯାଉଥିଲା । ଏହାକୁ ଲେଖିବା ପାଇଁ, ଛାପିବା ପାଇଁ ଏବଂ ବିତରଣ କରିବା ପାଇଁ ସ୍ପେଶାଲିଷ୍ଟମାନେ ଥିଲେ ।

ସଂଘବଦ୍ଧ ହିଂସାରେ ସାଧାରଣତଃ ମହିଳାମାନେ ବେଶୀ ଆକ୍ରାନ୍ତ ହୋଇଥାନ୍ତି । ଏଥରକ ମଧ୍ୟ ମହିଳାମାନେ ହିଂସାର ଶିକାର ହେବାବେଳେ ମହିଳାମାନେ ହିଂସାରେ ମଧ୍ୟ ଯୋଗ ଦେଇଛନ୍ତି । ୧୯୬୯ ଦଙ୍ଗାବେଳେ ଲୁଟତରାଜ ନ ହୋଇଥିବା ବେଳେ ଏଥରକ ବ୍ୟାପକ ଲୁଟତରାଜ ହୋଇଛି ଏବଂ ଏଥିରେ ମହିଳାମାନେ ମଧ୍ୟ ଭାଗ ନେଇଛନ୍ତି । ଏଥରକ ଆଦିବାସୀମାନଙ୍କୁ ଏହି ଦଙ୍ଗାରେ ସ୍ୱାମିଲ କରାଯାଇଛି ।

## (୯) ଆଦିବାସୀମାନେ ଦଙ୍ଗାରେ ସଂପୃକ୍ତ ହେବାର କାରଣ କ'ଣ ?

ଏହି ଦଙ୍ଗାରେ ଆଦିବାସୀମାନେ ଲୁଟତରାଜରେ ସଂପୃକ୍ତ ହେବା ସତ୍ୟ ହୋଇଥିଲେ ହେଁ ଦଙ୍ଗା କ୍ଷତିଗ୍ରସ୍ତ ମୁସଲମାନମାନେ କିନ୍ତୁ ଆଦିବାସୀମାନଙ୍କୁ ଆର୍ଥିକ ପ୍ରଲୋଭନ ଦେଖାଇ ରାଜନୈତିକ ବ୍ୟକ୍ତିମାନେ ଏ କାର୍ଯ୍ୟ କରାଇଛନ୍ତି ବୋଲି କହିଛନ୍ତି । ସେମାନେ ଆହୁରି ମଧ୍ୟ କହିଛନ୍ତି ଯେ ଆଦିବାସୀମାନଙ୍କର କୌଣସି ବିକଳ୍ପ ନ ଥିଲା । କାରଣ, ସେମାନଙ୍କୁ ଏହି ଦଙ୍ଗାରେ ସାମିଲ ହେବାପାଇଁ ଧମକ ଚମକ ଓ ବଳ ପ୍ରୟୋଗ କରାଯାଇଥିଲା । ସେମାନଙ୍କୁ ପ୍ରଚୁର ମଦ ଓ ଟଙ୍କା ବଣ୍ଟାଯାଉଥିଲା । ଏବଂ ଲୁଟିଥିବା ସମସ୍ତ ଦ୍ରବ୍ୟ ମଧ୍ୟ ସେମାନେ ନେଉଥିଲେ । ଏକଥା ବାସଚ୍ୟୁତ ଦଙ୍ଗା କ୍ଷତିଗ୍ରସ୍ତ ମୁସଲମାନମାନଙ୍କୁ ଆଦିବାସୀ ମାନେ ମଧ୍ୟ କହିଛନ୍ତି । ଦଙ୍ଗାଗ୍ରସ୍ତ ବିଭିନ୍ନ ଗାଁମାନଙ୍କରେ ଯେଉଁଠାରେ ମୁସଲମାନ ଓ ଆଦିବାସୀମାନେ ବସବାସ କରନ୍ତି, ସେଠାରେ ସେମାନଙ୍କର ସଂପର୍କ ଭଲ କାରଣ ଆର୍ଥିକ ଦୃଷ୍ଟିରୁ ଆଦିବାସୀମାନେ ମୁସଲମାନଙ୍କ ଉପରେ ନିର୍ଭର କରନ୍ତି । ଆଦିବାସୀମାନେ ଆଦୌ ମୁସଲମାନଙ୍କ

ହତ୍ୟାକରିବାରେ ସଂପୃକ୍ତ ନ ହୋଇ କେବଳ ଲୁଟ ଓ ଘରେ ନିଆଁ ଲଗାଇବା କାର୍ଯ୍ୟରେ ସଂପୃକ୍ତ । ଏପରିକି ସେମାନେ କୌଣସି ମହିଳାକୁ ଧର୍ଷଣ କିମ୍ବା ଅସୌଜନ୍ୟତା ମଧ ପ୍ରକାଶ କରିନାହାନ୍ତି । ବିଶ୍ୱ ହିନ୍ଦୁ ପରିଷଦ ଆଦିବାସୀମାନଙ୍କୁ ସେମାନଙ୍କର ଅଜ୍ଞତା, ଦାରିଦ୍ର୍ୟ ଏବଂ ବେକାରୀର ସୁଯୋଗ ନେଇ ହିନ୍ଦୁତ୍ୱବାଦ ବିଚାର ଦ୍ୱାରା ପ୍ରଭାବିତ କରିଛନ୍ତି ।

## (ଙ) ସାଂପ୍ରଦାୟିକତାର ରୂପରେ ଏ ପରିବର୍ତ୍ତନ କାହିଁକି ?

ବହୁ ଲୋକ ଗୁଜୁରାଟରେ ଯାହା ଘଟିଗଲା ଓ ଘଟୁଛି, ସେହି ଦଙ୍ଗାକୁ ସାଂପ୍ରଦାୟିକ ଦଙ୍ଗା ବୋଲି କହୁଛନ୍ତି । ସାଂପ୍ରଦାୟିକତା କହିଲେ ସାଧାରଣତଃ ଆମେ ହିନ୍ଦୁ ଓ ମୁସଲମାନ ମଧ୍ୟରେ ଦଙ୍ଗାକୁ ବୁଝୁଥାଉ । କିନ୍ତୁ ଗୁଜୁରାଟରେ ଯାହା ଘଟିଲା ବା ଘଟୁଛି, ତାହା ଗତାନୁଗତିକ ସାଂପ୍ରଦାୟିକତା ନୁହେଁ । ସାଂପ୍ରଦାୟିକତା ଅର୍ଥ ହେଉଛି ଦୁଇଟି ପରସ୍ପର ଧାର୍ମିକ ଗୋଷ୍ଠୀର ମଧ୍ୟରେ ହେଉଥିବା ସଂଘର୍ଷରେ ରାଷ୍ଟ୍ର ନିରପେକ୍ଷ ରହି ଶାନ୍ତି ଶୃଙ୍ଖଳା ରକ୍ଷା କରିବାକୁ ଚେଷ୍ଟା କରେ । ରାଷ୍ଟ୍ରର ଭୂମିକା ନିରପେକ୍ଷ ରହି ଦଙ୍ଗା ଭିଆଉଥିବା ଓ ଦଙ୍ଗାଦ୍ୱାରା କ୍ଷତିଗ୍ରସ୍ତ ହେଉଥିବା ଲୋକମାନଙ୍କ ମଧ୍ୟରେ ଆଇନକୁ ଲାଗୁ କରେ ଓ ଶାନ୍ତି ରକ୍ଷା କରେ । ରାଷ୍ଟ୍ର କୌଣସି ପକ୍ଷଭୁକ୍ତ ହୁଏନାହିଁ । ସାଂପ୍ରଦାୟିକତା ବେସାରିକ ସମାଜ ବା ସଭ୍ୟସମାଜରେ ଗୋଟିଏ ରୂପ ଯାହାକୁ ନିୟନ୍ତ୍ରଣ କରିବାର ଦାୟିତ୍ୱ ହେଉଛି ରାଷ୍ଟ୍ରର । ଗୁଜୁରାଟ ଘଟଣାକୁ ଐତିହାସିକ ଭାବେ ସାଂପ୍ରଦାୟିକତା କହିବା ଠିକ୍ ହେବନାହିଁ କାରଣ ରାଜ୍ୟ ଦୀର୍ଘ ଦିନଧରି ଚଳିଆସିଥିବା ନୀତିନିୟମକୁ ପରିହାର କରି ଗୋଟିଏ ସଂପ୍ରଦାୟ ପ୍ରତି ନିଜର ସମର୍ଥନ ଦେଉଛନ୍ତି ।

ସଭ୍ୟ ସମାଜର ମାନସିକତା ଏବଂ ନିୟନ୍ତ୍ରଣ ମାଧମରେ ସାଂପ୍ରଦାୟିକତା ନିଜର କାର୍ଯ୍ୟ ପରିସରକୁ ଜାରି ରଖେ । ତେଣୁ ସଂଖ୍ୟାଧିକ ସାଂପ୍ରଦାୟିକତା କିମ୍ବା ସଂଖ୍ୟାଲଘୁ ସାଂପ୍ରଦାୟିକତା ମଧ୍ୟରେ କ'ଣ ବାସ୍ତବ ପାର୍ଥକ୍ୟ ରହିଛି, ତାହା କୁହାଯାଇ ପାରିବ ନାହିଁ । ପ୍ରଭେଦର ବାସ୍ତବ ଦିଗଟି ହେଉଛି ଯେତେବେଳେ ସଂଖ୍ୟାଧିକ ଲୋକ ମାନଙ୍କର ସାଂପ୍ରଦାୟିକତା କଥା କୁହାଯାଏ, ତାହାର ମୁଖା ହୋଇଯାଏ "ଜାତୀୟତାବାଦୀ ଶକ୍ତି" ଏବଂ ରାଷ୍ଟ୍ରଶକ୍ତି ତା' ସହିତ ରହିଥାଏ । ସଂଖ୍ୟାନ୍ୟୂନ ସାଂପ୍ରଦାୟିକତାରେ ଏହି ଦିଗଟିର ଅଭାବ ଦେଖାଯାଏ । ଏହାର ବିକାଶ ନିଜ ଗୋଷ୍ଠୀର ସ୍ୱରୂପ ଉପରେ ବିପଦ ଥିବାରୁ ହୁଏ । ଏଥିପାଇଁ ଉଦାରବାଦୀ ଶକ୍ତିମାନେ ସଂଖ୍ୟାନ୍ୟୂନଙ୍କ ମଧ୍ୟରେ ଗଣତନ୍ତ୍ରୀକରଣକୁ ପ୍ରବେଶ କରାଇବାରେ ସଫଳ ହୋଇପାରନ୍ତି ନାହିଁ । ରାଷ୍ଟ୍ର ଅନେକ ସମୟରେ ନିରପେକ୍ଷ ରହେ ନାହିଁ ଏବଂ ସାଂପ୍ରଦାୟିକ ଶକ୍ତିମାନଙ୍କୁ ପରୋକ୍ଷ ବା ପ୍ରତ୍ୟକ୍ଷ ସମର୍ଥନ କରେ । ଗୁଜୁରାଟରେ ଯାହା

ଘଟିଲା ତାହାର ନିଷ୍ଠୁର ପ୍ରତିଛବି ହେଉଛି ରାଜ୍ୟର କ୍ଷମତାକୁ ସାଂପ୍ରଦାୟିକ ବ୍ୟକ୍ତିମାନେ ନିଜ ହାତକୁ ନେଇଗଲେ । ରାଜ୍ୟର ଆଇନ ଶୃଙ୍ଖଳା ଯନ୍ତ୍ର ସମ୍ମୁଖରେ ସଂଗଠିତ ସାଂପ୍ରଦାୟିକ ଗୋଷ୍ଠୀ ହିଂସାକାଣ୍ଡ ଭିଆଇଲେ । ରାଜ୍ୟ ମଧ୍ୟ ଘଟୁଥିବା ଏହି ହିଂସା ଠିକ୍ ବୋଲି କହିବାକୁ ଆରମ୍ଭ କଲା । ରାଜ୍ୟର ଯେଉଁ ମୌଳିକ ଦାୟିତ୍ୱ ନିରପେକ୍ଷ ରହି ସାଂପ୍ରଦାୟିକ ହିଂସାକୁ ନିୟନ୍ତ୍ରଣ କରିବା ତାହା ଗୁଜରାଟ ରାଜ୍ୟ ସରକାର ଆଦୌ କଲେ ନାହିଁ ।

ଆମେ ଅଯୋଧ୍ୟାରେ ଦେଖା ଦେଇଥିବା ବିବାଦକୁ ବିଚାର କରିବା । ଏହାକୁ ହିନ୍ଦୁ-ମୁସଲମାନ ଦ୍ୱନ୍ଦ୍ୱର ରୂପ ଦିଆଯାଇ, ଏହା ମଧ୍ୟରେ ଥିବା ପ୍ରଚ୍ଛନ୍ନ ରାଜନୈତିକ ଉଦ୍ଦେଶ୍ୟକୁ ଲୁଚାଇ ଦିଆଯାଉଛି । ଏହାକୁ ହିନ୍ଦୁ ମୁସଲମାନ ଦ୍ୱନ୍ଦ୍ୱ ଉପରେ ରୂପ ଦିଆଯାଇ ସଂଖ୍ୟାଧିକ ସାଂପ୍ରଦାୟିକତାକୁ ସଂଗଠିତ କରାଯାଉଛି ଏବଂ ଏହାର ସାମାଜିକ ଭିତ୍ତିଭୂମିକୁ ବଢ଼ାଇ ଦିଆଯାଇଛି । ସ୍ୱାଧୀନତା ପର ଠାରୁ ଦେଶଗଠନ ପାଇଁ ଭାରତ ଧର୍ମ ନିରପେକ୍ଷ ନୀତି ଗ୍ରହଣ କରିଛି । ଯେ କୌଣସି ସମାଜ ବ୍ୟବସ୍ଥାକୁ ଆଧୁନିକୀକରଣ କରିବାକୁ ହେଲେ ସମାଜରେ ଧର୍ମ, ଭାଷା ଓ ଜାତିନେଇ ଯେଉଁ ବିଭେଦ ରହିଛି ତାକୁ ଦୂର କରି ଏକ ଧର୍ମନିରପେକ୍ଷ ରାଷ୍ଟ୍ର ଗଠନ କରାଯାଏ ଏବଂ ଏକତ୍ରୀକରଣ ରାଷ୍ଟ୍ର ହୁଏ ।

ଭାରତରେ ସାଂପ୍ରଦାୟିକତାକୁ ଲକ୍ଷ୍ୟ କଲେ ଦେଖାଯାଏ ଯେ ପାଶ୍ଚାତ୍ୟ ଢାଞ୍ଚାରେ ଧର୍ମନିରପେକ୍ଷ ରାଷ୍ଟ୍ରଗଠନ ଭାରତରେ ବାସ୍ତବରେ ସମ୍ଭବ ହୋଇପାରିନି । ସାଂପ୍ରଦାୟିକତା ଧାର୍ମିକ ଗୋଷ୍ଠୀ ମଧ୍ୟରେ ଦ୍ୱନ୍ଦ୍ୱକୁ ବୁଝାଯାଇଛି କିମ୍ବା ଧର୍ମ ଆଳୁଆଳରେ ଧର୍ମନିରପେକ୍ଷ ଆଗ୍ରହର ଦ୍ୱନ୍ଦ୍ୱ ବୋଲି କୁହାଯାଇଛି । ଯେଉଁମାନେ ସମ୍ପୂର୍ଣ୍ଣ ଅଜ୍ଞ, ସେମାନେ ସାଂପ୍ରଦାୟିକତା କହିଲେ କିଛି ବୁଝନ୍ତି ନାହିଁ ବରଂ ଭାରତର ଉଚ୍ଚଶିକ୍ଷିତ ବର୍ଗ ଯେଉଁମାନେ ଆଧୁନିକ ମାନସିକତା ନେଇ ଚାଲିଛନ୍ତି ସେମାନେ ସାଂପ୍ରଦାୟିକତାକୁ ସମର୍ଥନ କରନ୍ତି । ୧୯୯୦ ମସିହା ପରେ ସାଂପ୍ରଦାୟିକତା ଯେଉଁ ନୂତନ ରୂପ ପରିଗ୍ରହ କରିଛି, ତାହାର ମୂଳ କାରଣ ଆର୍ଥିକ ଉଦାରୀକରଣ । ଏହା ଉପଭୋକ୍ତାବାଦକୁ ବୃଦ୍ଧି କରିଛି ଏବଂ ପ୍ରଚାର ମାଧ୍ୟମ ଟି.ଭିର ବହୁଳ ପ୍ରସାର କରାଇଛି । ଟି.ଭି ଗାଁ ଗହଳର ନିମ୍ନ ଆୟକାରୀବର୍ଗଙ୍କ ପାଖରେ ପହଞ୍ଚିବା ଦ୍ୱାରା ଭାରତୀୟ ସମାଜ ବ୍ୟବସ୍ଥାରେ ଥିବା ସୂଚନା ପରିବେଶକୁ ମଧ୍ୟ ପରିବର୍ତ୍ତନ କରିଛି । ଟି.ଭି ପ୍ରଚାରର ପ୍ରଭାବ ସମସ୍ତଙ୍କ ଉପରେ ପଡୁଛି । ଟି.ଭି ମାଧ୍ୟମରେ ସାଧାରଣ ଲୋକମାନେ ଦୁଇ ପ୍ରକାର ତଥ୍ୟ ପାଉଛନ୍ତି । କେତେକ ତଥ୍ୟ ସିଧାସଳଖ ଯାହା ସହିତ ପ୍ରତ୍ୟକ୍ଷ ଅନୁଭୂତି ରହିଛି ଏବଂ ଅନ୍ୟ କେତେକ ସ୍ଥାନ ଓ ପ୍ରତିକୃତିର ତଥ୍ୟ ଯାହା ସହିତ ସିଧାସଳଖ ଅନୁଭୂତି ନାହିଁ । ବହୁ ଦୂର ସ୍ଥାନରେ ଯେଉଁ ଘଟଣା ଘଟୁଛି. ତାହା ଟି.ଭିରେ ବାସ୍ତବ ରୂପ ପରି

ଚଣାଯାଉଛି ଏବଂ ଦର୍ଶକମାନଙ୍କର ଚିନ୍ତା ଓ ବିଚାରକୁ ପ୍ରଭାବିତ କରୁଛି । ଫଳରେ ଦେଶବ୍ୟାପୀ ଲୋକମାନେ ବହୁ ଦୂର ସ୍ଥାନରେ ଘଟୁଥିବା ଯେ କୌଣସି ଘଟଣାକୁ ନିଜର ଦୈନନ୍ଦିନ ଜୀବନର ଘଟଣା ଭାବେ ଗ୍ରହଣ କରୁଛନ୍ତି ଏବଂ ବିଭିନ୍ନ ଗୋଷ୍ଠୀମାନଙ୍କ ମଧ୍ୟରେ ନିଜ ନିଜର ଗୋଷ୍ଠୀଗତ ବନ୍ଧନ ବୃଦ୍ଧି ପାଉଛି । 'ସାଂପ୍ରଦାୟିକତା' ସଂଖ୍ୟାଧିକମାନଙ୍କ ମଧ୍ୟରେ ଏହିପରି ଢଙ୍ଗରେ ଏକତ୍ୱ ସୃଷ୍ଟି କରିବାରେ ସମର୍ଥ ହୋଇଛି । ଏହି ସମସ୍ୟାକୁ ମୁକାବିଲା କରିବାକୁ ହେଲେ ଆମର ଦୃଷ୍ଟିଭଙ୍ଗୀରେ ପରିବର୍ତ୍ତନ ଲୋଡ଼ା । ଆମକୁ ନିଜର ଏକ ପ୍ରକାର ସ୍ୱରୂପକୁ ଚିହ୍ନିବାରେ ମଧ୍ୟ ପରିବର୍ତ୍ତନ ଦରକାର ।

ଗାନ୍ଧିଜୀଙ୍କର ବିଚାରକୁ ଏଠାରେ ଉପସ୍ଥାପିତ କରିବାର ଆବଶ୍ୟକତା ରହିଛି । ନୂଆଖାଲିଠାରେ ଯେତେବେଳେ ସାଂପ୍ରଦାୟିକ ଦଙ୍ଗା ଓ ରକ୍ତପାତ ଘଟିଥିଲା । ସେ କହିଥିଲେ, ''ତୁମେ କହୁଛ, ହିନ୍ଦୁମାନେ ମୁସଲମାନମାନଙ୍କୁ ଓ ମୁସଲମାନମାନେ ହିନ୍ଦୁମାନଙ୍କୁ ହତ୍ୟା କରୁଛନ୍ତି । ମୁଁ ହିନ୍ଦୁ କିନ୍ତୁ ମୁଁ ମଧ୍ୟ ମୁସଲମାନ, ଖ୍ରୀଷ୍ଟିୟାନ୍ ଓ ଶିଖ୍ । ତୁମ୍ଭେମାନେ ମଧ୍ୟ ସବୁ ସେଇଆ ।''

## (ଟ) ଗୁଜୁରାଟର ନରେନ୍ଦ୍ର ମୋଦୀ ସରକାର ବହିଷ୍କାର ଦାବିରେ ସଂସଦରେ ବିତର୍କ :

ରାଜ୍ୟଦ୍ୱାରା ପ୍ରୋତ୍ସାହିତ ଗୁଜୁରାଟ ନରସଂହାରକୁ ନେଇ ପାର୍ଲାମେଣ୍ଟରେ ମଧ୍ୟ ଝଡ଼ ସୃଷ୍ଟି ହୋଇଛି । ନରେନ୍ଦ୍ର ମୋଦି ସରକାରକୁ ବହିଷ୍କାର କରିବା ଦାବିରେ ପ୍ରାୟ ଦଶଦିନ ଲୋକସଭା କାର୍ଯ୍ୟ ଅଚଳ ହୋଇ ପଡ଼ିବା ପରେ ଲୋକସଭାର ଉପବାଚସ୍ପତି ଶ୍ରୀ ପି.ଏମ୍. ସୟିଦ୍‌କୁ ନିୟମ ଅନୁଯାୟୀ ଗୁଜୁରାଟ ସଂପର୍କରେ ଆଲୋଚନା ହେବାକୁ ଏପ୍ରିଲ ୨୩ ତାରିଖ ଦିନ ମତ ଦେଇଥିଲେ । ୧୮୪ ନିୟମ ଅନୁସାରେ ଆଲୋଚନା ହେବା ଅର୍ଥ ବିତର୍କ ଶେଷରେ ଭୋଟ ହେବ । ଶ୍ରୀ ପି.ଏମ୍. ସୟିଦ୍‌ଙ୍କର ୧୮୪ ନିୟମ ଆଲୋଚନା ହେବା ନିର୍ଦ୍ଧାରଣକୁ ପ୍ରଧାନମନ୍ତ୍ରୀ ଦୁର୍ଭାଗ୍ୟ (ଅନ୍‌ଫରଚୁନେଟ୍) ବୋଲି ମତ ଦେଇଥିଲେ । ଶ୍ରୀ ପି.ଏମ୍.ସୟିଦ୍ ତାଙ୍କର ନିଷ୍ପତ୍ତି ଓ ନିର୍ଦ୍ଧାରଣ ଜଣାଇ କହିଥିଲେ, ''ଗୁଜୁରାଟ ଅବସ୍ଥାକୁ ଆମେ ସେହି ରାଜ୍ୟର କେବଳ ସାଧାରଣ ଆଇନ ଶୃଙ୍ଖଳା ଅବସ୍ଥା ବୋଲି ବିଚାର କରି ପାରିବା ନାହିଁ ଯାହା ସେହି ରାଜ୍ୟ ସରକାରଙ୍କ ପ୍ରତି ଉଦ୍ଦିଷ୍ଟ । ଏହା ନିୟମ ୧୮୪ ଅନୁଯାୟୀ ସର୍ବସାଧାରଣଙ୍କର ସ୍ୱାର୍ଥ ସହିତ ଜଡ଼ିତ । ତେଣୁ ଏହି ଆଲୋଚନା ପାଇଁ ଯେଉଁ ନୋଟିସ୍ ଦିଆଯାଇଛି, ସେଥିରେ କେତେକ ନିର୍ଦ୍ଦିଷ୍ଟ ଓ ଶକ୍ତ ବିଷୟ ରହିଛି ।'' ଏହାକୁ ଆହୁରି ସ୍ପଷ୍ଟ କରିବାକୁ ଯାଇ ଉପବାଚସ୍ପତି ମତ ଦେଲେ ଯେ, ''ଏହା ନିଃସନ୍ଦେହ ଯେ ଏହି ଚଳିତ ବଜେଟ୍ ଅଧିବେଶନରେ ମାର୍ଚ୍ଚ ୧୧ ତାରିଖ

ଦିନ ଗୁଜୁରାଟ ଅବସ୍ଥା ସଂପର୍କରେ ଆଲୋଚନା ହୋଇଛି । ଏହା ମଧ୍ୟ ସରକାରଙ୍କର ମତ ନୁହେଁ ଯେ ଏ ବିଷୟରେ ପୁନରାୟ ଆଲୋଚନା ହେବା ଉଚିତ ନୁହେଁ । ଗୁଜୁରାଟରେ ପରିସ୍ଥିତି ଅତ୍ୟନ୍ତ ଖରାପ, ଏଠାରେ ଆଲୋଚନା ପରେ ମଧ୍ୟ ସେଠାରେ ହିଂସାର ଭୟଙ୍କର ଘଟଣାମାନ ଘଟୁଛି । ଏହି ଘଟଣା ସବୁ ରାଜ୍ୟର ବିଭିନ୍ନ ଜିଲ୍ଲାକୁ ବ୍ୟାପିଯିବାରେ ବ୍ୟସ୍ତ । ଶହ ଶହ ଲୋକ ମୃତାହତ ହେଲେଣି କିମ୍ବା କ୍ଷତବିକ୍ଷତ ହୋଇଛନ୍ତି, ରିଲିଫ୍ କ୍ୟାମ୍ପରେ ହଜାର ହଜାର ଲୋକ ଅଛନ୍ତି ଏବଂ ବହୁ ସମ୍ପତ୍ତି ନଷ୍ଟ ହୋଇଛି ।''

ଉପବାଚସ୍ପତି ଏ ସଂପର୍କରେ ଉଲ୍ଲେଖ କଲେ ଯେ ଜାତୀୟ ମାନବିକ ଅଧିକାର କମିଶନ, ସଂଖ୍ୟାଲଘୁ କମିଶନ ଏବଂ ସ୍ୱାଧୀନ ସଂଗଠନ ଯେଉଁମାନଙ୍କର ଜାତୀୟ ଭାବମୂର୍ତ୍ତି ରହିଛି ଗୁଜୁରାଟ ଅବସ୍ଥା ସାଂଘାତିକ ବୋଲି ମତ ଦେଇଛନ୍ତି । ତେଣୁ ଏହା ଉପରେ ୧୮୪ ନିୟମ ଅନୁସାରେ ଆଲୋଚନା ହୋଇ ଏପ୍ରିଲ ୩୦ ତାରିଖ ଦିନ ଭୋଟ ନିଆଯିବାର ନିଷ୍ପତ୍ତି ଜଣାଇ ଦେଇଥିଲେ । ଲୋକସଭାରେ ଏପ୍ରିଲ ୩୦ ତାରିଖ ଦିନ ଏହା ଉପରେ ଆଲୋଚନା ହୋଇ ଭୋଟ ନିଆଗଲା । ନିଜର ସଂଖ୍ୟାଧିକ ସମର୍ଥନ ଯୋଗୁଁ କେନ୍ଦ୍ର ସରକାର ଏଥିରେ ଜିତିଥିଲେ ମଧ୍ୟ ଆଲୋଚନାରୁ ସ୍ପଷ୍ଟ ହୋଇଗଲା ଯେ ବିଜେପି ନରେନ୍ଦ୍ର ମୋଦିଙ୍କୁ ସବୁ ପ୍ରକାର ସମର୍ଥନ ଓ ସୁରକ୍ଷା ଦେବାକୁ ଚାହାନ୍ତି । ତେଣୁ ଗୁଜୁରାଟ ସରକାରକୁ ଭାଙ୍ଗିଦେବା ସପକ୍ଷରେ ସେମାନେ ଆଦୌ ସହମତ କିମ୍ବା ସିବିଆଇ ଦ୍ୱାରା ଅନୁସନ୍ଧାନ କରିବାକୁ ରାଜି ହୋଇ ନ ଥିଲେ । ତୃଣମୂଳ କଂଗ୍ରେସ ନେତ୍ରୀ ସୁଶ୍ରୀ ମମତା ବାନାର୍ଜୀ କହିଥିଲେ, ''ଏହା ଆମର ଅନୁରୋଧ ଏବଂ ଆମର ଦାବି ଯେ ଗୁଜୁରାଟ ନେତୃତ୍ୱର ପରିବର୍ତ୍ତନ ହେଉ । ବିଜେପି ଆଉ ଜଣେ ନେତା ଖୋଜି ପାଇବ ।'' ଆନ୍ଧ୍ର ପ୍ରଦେଶର ମୁଖ୍ୟମନ୍ତ୍ରୀ ନିଜର ପ୍ରତିକ୍ରିୟାରେ କହିଥିଲେ, ''ଆମ୍ଭେମାନେ ସର୍ବସାଧାରଣଙ୍କର ବିଶ୍ୱାସ ହରାଇଥିବା ଦୋଷରେ ଦୋଷୀ ହେବୁ ଏବଂ ନାଗରିକମାନଙ୍କୁ ସଠିକ୍ ଓ ନିର୍ମଳ ଶାସନ ଦେବାରେ ସକ୍ଷମ ହେବୁ ନାହିଁ ଯଦି ମୋଦି କ୍ଷମତାରେ ରୁହନ୍ତି ।'' ସବୁଠାରୁ ତୀକ୍ଷ୍ଣ ସମାଲୋଚନା ଥିଲା ବିଜେପି ଦଳର ଶ୍ରୀ ଶାନ୍ତା କୁମାରଙ୍କର- ''ନିରୀହ ଲୋକମାନଙ୍କର ଶବ ଉପରେ କ'ଣ ଗଣତନ୍ତ୍ର ତିଷ୍ଠି ରହିବ ? ନରସଂହାର କ'ଣ ଅଧିକ ଭୋଟ ଆଣି ପାରିବ (ଯଦି ନିର୍ବାଚନ ହୁଏ) ?'' ବିଜେପି ସହିତ ଥିବା ସହଯୋଗୀ ଦଳମାନେ ମଧ୍ୟ ନିଜର ରାଜନୈତିକ ସ୍ୱାର୍ଥକୁ ସଂବିଧାନ ଓ ଧର୍ମ ନିରପେକ୍ଷତା ଠାରୁ ଅଧିକ ବେଶୀ ଗୁରୁତ୍ୱ ଦେଲେ । କେବଳ ଶ୍ରୀ ରାମ ବିଳାଶ ପାଶ୍ୱାନ୍ ମନ୍ତ୍ରୀମଣ୍ଡଳରୁ ଇସ୍ତଫା ଦେଲେ । ସବୁଠାରୁ ଲଜ୍ଜାଜନକ ମତବ୍ୟ ଥିଲା ପ୍ରତିରକ୍ଷା ମନ୍ତ୍ରୀ ଶ୍ରୀ ଜର୍ଜ ଫର୍ଣ୍ଣାଣ୍ଡିସଙ୍କର । ସେ କହିଲେ, ''କୌଣସି ଗର୍ଭବତୀ ମହିଳାର ପେଟକୁ ଚିରିଦେବା କିମ୍ବା ମା' ସମ୍ମୁଖରେ ଝିଅକୁ ଧର୍ଷଣ କରିବା କିଛି ନୂଆ କଥା ନୁହେଁ ।'' ଦୀର୍ଘ ୫୪ ବର୍ଷ ଧରି ଭାରତରେ ଏପରି ଘଟଣା ଘଟୁଥିବାର ସେ

ଦାବି କରିଥିଲେ । ମାନବିକ ମୂଲ୍ୟବୋଧକୁ ଅତି ନିର୍ଲ୍ଲଜ ଭାବରେ ବେଖାତିର କରିବାର ଉଦାହରଣ ଏହାଠାରୁ ଅଧିକ କ'ଣ ହୋଇପାରେ ?

## (ଠ) ବିଦେଶୀ ରାଷ୍ଟ୍ରମାନଙ୍କର ପ୍ରତିକ୍ରିୟା :

ଗୁଜୁରାଟ ଘଟଣା ଉପରେ ବିଭିନ୍ନ ରାଷ୍ଟ୍ରର ପ୍ରତିକ୍ରିୟା ଭାରତକୁ ଏକ ଅପ୍ରୀତିକର ପରିସ୍ଥିତିରେ ପକାଇଛି । ଆମେରିକାର ସହ ସଚିବ ମିଷ୍ଟର କ୍ରିଷ୍ଟାନ ରୋକା ଗୁଜୁରାଟ ଘଟଣାକୁ ଭୟାନକ "Horrible" ବୋଲି କହି ତୁରନ୍ତ ଶାନ୍ତି ପ୍ରତିଷ୍ଠା ପାଇଁ କହିଛନ୍ତି । ଭାରତରେ ଥିବା ଆମେରିକାର ରାଷ୍ଟ୍ରଦୂତ ରବର୍ଟ ଡି. ବ୍ଲାକଉଇଲ ଏପ୍ରିଲ ୧୭ ତାରିଖ ଦିନ ଚଣ୍ଡିଗଡ଼ଠାରେ ଏକ ପ୍ରେସ ମିଟ୍‌ରେ କହିଛନ୍ତି, ''ମୁଁ ହିଂସାକୁ ତୀବ୍ର ନିନ୍ଦା କରେ ଏବଂ ଏହା ଅତ୍ୟନ୍ତ କ୍ଷୋଭର କଥା । ଭାରତ ସରକାର ଏହାର ସମାଧାନ ପାଇଁ ବାଟ ବାହାର କରିବା ଉଚିତ ଏବଂ ଦେଖିବା ଉଚିତ ଯେ ସ୍ୱାଭାବିକ ଅବସ୍ଥା ପ୍ରତିଷ୍ଠା ହୋଇଛି ।'' ବୈଦେଶିକ ବିଭାଗ ଏହା ଭାରତର ଆଭ୍ୟନ୍ତରୀଣ ମାମଲା ବୋଲି କହି ଏଡାଇ ଯିବାକୁ ଚାହୁଁଥିଲେ ମଧ ଏଥିରେ ସାର୍ବଜନୀନ ମାନବିକ ମୂଲ୍ୟବୋଧର ପ୍ରଶ୍ନ ନିହିତ ଥିବାରୁ, ବିଦେଶୀ ରାଷ୍ଟ୍ରମାନଙ୍କର ପ୍ରତିକ୍ରିୟା ହେବା ସ୍ୱାଭାବିକ । ବିଦେଶୀ ଦୂତାବାସ ବିଶେଷ କରି ବ୍ରିଟେନ୍, ଜର୍ମାନୀ, ନେଦରଲାଣ୍ଡ ଓ ୟୁରୋପିୟାନ୍ ଇଉନିୟନର ପ୍ରତିନିଧିମାନେ ଗୁଜୁରାଟ ଯାଇ ସେଠାକାର ଘଟଣାକୁ ଅନୁଧାନ କରି ବ୍ରସେଲକୁ ଗୋଟିଏ ରିପୋର୍ଟ ପଠାଇଛନ୍ତି । ସେହି ରିପୋର୍ଟରେ କୁହାଯାଇଛି (କ) ଯେପରି ହିଂସା ଘଟିଛି, ସେଥିରୁ ହିନ୍ଦୁ ଅଞ୍ଚଳମାନଙ୍କରୁ ମୁସଲମାନମାନଙ୍କୁ ନିଷ୍କାଳି ଦେବା (ଖ) ଏହା ପୂର୍ବ ପରିକଳ୍ପିତ (ଗ) ବହୁ ଜୀବନ ହାନୀ ଘଟିଥିବାରୁ ୟୁରୋପିୟାନ୍ ୟୁନିୟନ ଚିନ୍ତିତ (ଘ) ରାଜ୍ୟ ସରକାରଙ୍କର ସ୍ୱାନ୍ତନାମୂଳକ ଅନୁଦାନରେ ବାଛ ବିଚାର (ଡ) ରାଜ୍ୟ ସରକାର ମାନବିକ ସହାୟତା ଦେବାରେ ବିଫଳ ହୋଇଛନ୍ତି ଏବଂ ତୁରନ୍ତ ଦେବା ପାଇଁ କୁହାଯାଇଛି (ଚ) ଭାରତ ସରକାର ତୁରନ୍ତ ଅନୁସନ୍ଧାନ କରି ଦୋଷୀକୁ ଦଣ୍ଡ ଦେବାକୁ ଏହି ରିପୋର୍ଟରେ ଉଲ୍ଲେଖ କରାଯାଇଛି । ଫିନ୍‌ଲ୍ୟାଣ୍ଡର ବିଦେଶ ମନ୍ତ୍ରୀ ଏର୍କୀ ଟୁଓମିଓଜା ଭାରତ ଗସ୍ତରେ ଆସିଥିବା ବେଳେ କହିଛନ୍ତି, ''ନରସଂହାରର ଛବି ଅତ୍ୟନ୍ତ ଗୋଳମାଳିଆ ।''

ଗ୍ରେଟ୍ ବ୍ରିଟେନ୍‌ର ହାଇକମିଶନରଙ୍କ ଦ୍ୱାରା ପଠାଯାଇଥିବା ତିନିଜଣିଆ ଅନୁସନ୍ଧାନ କମିଟି ତାଙ୍କ ରିପୋର୍ଟରେ ଦର୍ଶାଇଛନ୍ତି ଯେ ମୃତାହତ ସଂଖ୍ୟା ସରକାରୀ ରିପୋର୍ଟ ୮୫୦ରୁ ଦୁଇ ଗୁଣରୁ ଅଧିକ । ସେହି ରିପୋର୍ଟରେ ଆହୁରି ମଧ ଉଲ୍ଲେଖ କରାଯାଇଛି ଯେ ସମଗ୍ର ରାଜ୍ୟରେ ପୂର୍ବ ପରିକଳ୍ପିତ ଯୋଜନା ଅନୁସାରେ ହିଂସା ସୃଷ୍ଟି କରିବା ପାଇଁ ଗୋଧ୍ରା ଘଟଣା ଉପଲକ୍ଷ୍ୟ ମାତ୍ର । ଗୁଜୁରାଟ ଘଟଣା ମଧ ବ୍ରିଟିଶ

ପାର୍ଲାମେଣ୍ଟରେ ଆଲୋଚିତ ହୋଇଛି । ଏଥିଯୋଗୁଁ ବିଦେଶ ମନ୍ତ୍ରୀ ଶ୍ରୀ ଯଶୱନ୍ତ ସିଂହ ବ୍ରିଟେନ୍‌ର ବୈଦେଶିକ ସଚିବ ଜ୍ୟାକି ଷ୍ଟ୍ରକୁ ସାକ୍ଷାତ କରି ଆଲୋଚନା କରିଛନ୍ତି । ଭାରତ ସରକାର ଏହା ନିଜର ଆଭ୍ୟନ୍ତରୀଣ ବ୍ୟାପାର କହି ଘଟଣାକୁ ଏଡାଇବାକୁ ଚେଷ୍ଟା କଲେ ମଧ୍ୟ ବହୁ ବିଦେଶୀ ରାଷ୍ଟ୍ରର ପ୍ରତିନିଧି ମାନେ ନିଜର ମତବ୍ୟକ୍ତ କରିବାକୁ କୁଣ୍ଠା ପ୍ରକାଶ କରୁନାହାନ୍ତି ।

ସ୍ୱଇଜରଲାଣ୍ଡର ବିଦେଶ ମନ୍ତ୍ରୀ ଯୋଶେଫ୍ ଡେସ୍ "ଅବସ୍ଥା ଯୋଗୁ ବିବ୍ରତ" କହିବା ବେଳେ କାନାଡ଼ାର ମନ୍ତ୍ରୀ ଷ୍ଟେଫିନ୍ ଡିଅନ୍ "ସେ ଶାନ୍ତିପୂର୍ଣ୍ଣ ଶୋଭାଯାତ୍ରାରେ ଯୋଗ ଦେବାକୁ ଚାହାଁନ୍ତି ।" ବୋଲି କହିଛନ୍ତି । ସେମାନଙ୍କ ମତରେ ରାଜ୍ୟରେ ଯାହାସବୁ ଘଟଣା ଘଟୁଛି, ତାହା ଆନ୍ତର୍ଜାତିକ ବ୍ୟବସ୍ଥା ପ୍ରତି ବିପଦ ଏବଂ ରାଜ୍ୟ ସରକାରଙ୍କର ଏଥିପ୍ରତି ପଦକ୍ଷେପ ଆନ୍ତର୍ଜାତିକ ଆଇନ୍ ଓ କନ୍‌ଭେନ୍‌ସନର ବିରୋଧାଚରଣ କରୁଛି । ଗୁଜୁରାଟ ଘଟଣା ଭାରତ ବର୍ଷ ପାଇଁ ସମଗ୍ର ବିଶ୍ୱ ସମ୍ମୁଖରେ ଏକ ଦୁର୍ବଳ ବିଜ୍ଞାପନରେ ପରିଣତ ହୋଇଛି ।

## (ଡ) ପୁଲିସ ଓ ପ୍ରଶାସନର ଭୂମିକା :

ଏହା ନିଃସନ୍ଦେହ ଭାବରେ କୁହାଯାଇପାରେ ଯେ ଗୁଜୁରାଟରେ ନରସଂହାର ଭାରତର ଚେତନାକୁ ଦୋହଲାଇ ଦେଇଛି । ଗୁଜୁରାଟରେ ଯେଉଁ ଅପରାଧ ସଂଘଟିତ ହେଲା, ସେଥିପାଇଁ ବହୁ ଲୋକଙ୍କର ଉତ୍ତର ଦାୟିତ୍ୱ ରହିଛି । ପୁଲିସ ଓ ପ୍ରଶାସନର ଦାୟିତ୍ୱ ଓ କର୍ତ୍ତବ୍ୟ ହେଉଛି ନ୍ୟାୟ, ଆଇନ କାନୁନ୍ ଏବଂ କ୍ଷତିଗ୍ରସ୍ତ ଲୋକମାନଙ୍କୁ ରକ୍ଷା କରିବା । ଦଙ୍ଗାଗ୍ରସ୍ତ ଅଞ୍ଚଳରେ ଯଦି ଜଣେ ପୁଲିସ୍ ଅଧିକାରୀ କିମ୍ବା ବରିଷ୍ଠ ପ୍ରଶାସନିକ ଅଧିକାରୀ ଅନ୍ୟାୟ ବିରୁଦ୍ଧରେ ଦାୟିତ୍ୱ ସମ୍ପାଦନ ନ କରି, ଭୟ ହେତୁ ହେଉ, ଘଟଣାର ରାଜନୈତିକ କାରଣ ଯୋଗୁ ହେଉ କିମ୍ବା ନିଜର ଖାମ ଖିଆଲି ମନୋବୃତ୍ତି ଯୋଗୁ ହେଉ, ତେବେ ଏହା ସବୁଠାରୁ ଅଧିକ ଧର୍ତ୍ତବ୍ୟ ଅପରାଧ ବୋଲି ବିବେଚନା ହେବ । ଏହା ଏପରି ଏକ ଧର୍ତ୍ତବ୍ୟ ଅପରାଧ ଯେ ଜଣେ ଡାକ୍ତର ଅପରେସନ୍ ଟେବୁଲ ଉପରେ ଜଣେ ରୋଗୀକୁ ହତ୍ୟା କରିବା ସହିତ ସମାନ । ସାଂବିଧାନିକ କର୍ତ୍ତବ୍ୟ ହେଉଛି କୌଣସି ସ୍ଥାନରେ ସାଂପ୍ରଦାୟିକ ହିଂସା ଉପୁଜ ହେଲେ ତାହାକୁ ପୁଲିସ ଓ ପ୍ରଶାସନିକ ଅଧିକାରୀମାନଙ୍କ ଦ୍ୱାରା ଦୃଢ଼ ହସ୍ତରେ ତତ୍‌କ୍ଷଣାତ୍ ବନ୍ଦ କରାଯିବା ଉଚିତ୍ । ଏଥିପାଇଁ ରାଜନୈତିକ ନିଷ୍ପତ୍ତି, ନିର୍ଦ୍ଦେଶର ଆବଶ୍ୟକତା ନାହିଁ । କାରଣ ଯଦି ତାହା କରାନଯାଏ, ତେବେ ସାଂପ୍ରଦାୟିକ ହିଂସା ଫଳରେ ବହୁ ନିରୀହ ଲୋକ ମରିବେ, ବହୁ ସ୍ତ୍ରୀଲୋକ ଧର୍ଷଣ ହେବେ ଏବଂ ଛୋଟ ଛୋଟ ପିଲାମାନଙ୍କ ମନଭିତରେ ଏକ ଅହେତୁକ ଭୟ ଆସ୍ଥାନ ଜମାଇ ବସିଯିବ, ଯାହା ପୁରୁଷାନୁକ୍ରମେ

ମନରୁ ଲୋପ ପାଇବା ସମ୍ଭବ ହେବନାହିଁ ।

ବର୍ତ୍ତମାନ ପୁଲିସ ଓ ପ୍ରଶାସନିକ ଅଧିକାରୀ ରାଜନୈତିକ ମାଷ୍ଟରଙ୍କ ଠାରୁ ନିର୍ଦ୍ଦେଶ ନ ପାଇଲେ କାର୍ଯ୍ୟ କରୁନାହାନ୍ତି । ଏପରିକି ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶ ହିଁ ସେମାନଙ୍କ ପାଇଁ କେବଳ ନିର୍ଦ୍ଦେଶ । ଗୁଜୁରାଟରେ ବହୁ ସ୍ଥାନରେ ପୁଲିସ ଓ ପ୍ରଶାସନ ହତ୍ୟା, ଲୁଣ୍ଠନ, ପୋଡ଼ି ଇତ୍ୟାଦି ଘଣଣାମାନ ଘଟିବାବେଳେ ନିରବଦ୍ରଷ୍ଟା ହୋଇ ରହିଛନ୍ତି । ଦଙ୍ଗାକୁ ଦୃଢ଼ ହସ୍ତରେ ଦମନ କରିବାକୁ ଚାହୁଁଥିବା ପୁଲିସ ଅଫିସରମାନଙ୍କର ବଦଳି ମଧ କରାଯାଇଛି । କେତେକ ପୁଲିସ ଥାନା ବିଶ୍ୱ ହିନ୍ଦୁ ପରିଷଦର କର୍ମୀଙ୍କ ଦ୍ୱାରା ପରିଚାଳିତ ହୋଇଛି । ପୂର୍ବତନ କଂଗ୍ରେସ ଏମ୍.ପି. ଇକବାଲ୍ ଇହସାନଜାଫ୍ରିଙ୍କର ପୁଲିସ ମହାନିର୍ଦ୍ଦେଶକ, ପୁଲିସ କମିଶନର, ମୁଖ୍ୟ ଶାସନ ସଚିବ, ଅତିରିକ୍ତ ଶାସନ ସଚିବ (ଘରୋଇ)ଙ୍କୁ ଆକୁଳ ନିବେଦନର କୌଣସି ମୂଲ୍ୟ ରହିନାହିଁ । ତାଙ୍କ ଘର ନିକଟରେ ଥିବା ଭ୍ରାମମାଣ୍ୟ ପୁଲିସ ଭ୍ୟାନ୍ ମଧ ହସ୍ତକ୍ଷେପ କରିନି । ଫଳରେ ଇହସାନ ଜାଫ୍ରିଙ୍କୁ ଅନ୍ୟମାନଙ୍କ ସହିତ ପୋଡ଼ି ମାରି ଦିଆଗଲା ।

ଅହମଦାବାଦର ପୁଲିସ କମିଶନର ପି.ସି. ପାଣ୍ଡେଙ୍କର ନରସଂହାରକୁ ରୋକିବାର ନିରବତା ପ୍ରତି ବହୁ ପୁଲିସ ଅଫିସର ନିରୁତ୍ସାହିତ ହେବା ସଂପର୍କରେ ମଧ ସେମାନେ କ୍ଷୋଭ ପ୍ରକାଶ କରିଛନ୍ତି । ଭାରତୀୟ ପୁଲିସ ସେବାର ଅଧିକାରୀଙ୍କ ସୂତ୍ରରୁ ଜଣାଯାଇଛି ଯେ ପୁଲିସ ମହା ନିର୍ଦ୍ଦେଶକ ୨୭ ତାରିଖ ରାତିରେ ମୁଖ୍ୟମନ୍ତ୍ରୀ ମୋଦିଙ୍କୁ ଭେଟି ବିଶ୍ୱ ହିନ୍ଦୁ ପରିଷଦ ଦ୍ୱାରା ଡକାଯାଇଥିବା ଗୁଜୁରାଟ ବନ୍ଦକୁ ଶାନ୍ତିପୂର୍ଣ୍ଣ ଭାବେ ପାଳିବାକୁ ବିଶ୍ୱ ହିନ୍ଦୁ ପରିଷଦର ନେତାମାନଙ୍କୁ ସେ ଅନୁରୋଧ କରନ୍ତୁ ବୋଲି କହିଥିଲେ, କିନ୍ତୁ ମୁଖ୍ୟମନ୍ତ୍ରୀଙ୍କ ଠାରୁ ସେପରି କୌଣସି ସମର୍ଥନ ପାଇଲେ ନାହିଁ ବରଂ ୨୮ ତାରିଖରେ ପୁଲିସକୁ ନିର୍ଦ୍ଦେଶ ଦିଆଗଲା ଯେ ଯେପରି ସେମାନେ ଦଙ୍ଗାକାରୀଙ୍କ ବିରୁଦ୍ଧରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ ନ କରନ୍ତି । ସାଧାରଣତଃ ଦଙ୍ଗା ହେବା ମାତ୍ରେ ସେହି ଅଞ୍ଚଳ ଓ ଅନ୍ୟ ଅଞ୍ଚଳ ଯାହା ଉତ୍ତେଜନା ପ୍ରବଣ ସେଠାରେ କର୍ଫ୍ୟୁ ଜାରି କରାଯାଏ । କିନ୍ତୁ ତାହାକୁ କରାଗଲା ନାହିଁ ବରଂ ବିଶ୍ୱ ହିନ୍ଦୁ ପରିଷଦ ଓ ବଜରଙ୍ଗ ଦଳର ନେତା ଓ କର୍ମୀମାନେ ଗୋଧ୍ରାର ମୃତଶବକୁ ଆଣି ସର୍ବସାଧାରଣରେ ଉତ୍ତେଜିତ ସ୍ଲୋଗାନ ଦେଇ ଦାହ କଲେ । ଏପରି ପରିସ୍ଥିତିରେ ସାଧାରଣତଃ ଉଚ୍ଚ ପୁଲିସ ଅଧିକାରୀ, ଘରୋଇ ବିଭାଗ ମୁଖ୍ୟମନ୍ତ୍ରୀଙ୍କ ମଧରେ ଉଚ୍ଚ ସ୍ତରୀୟ ବୈଠକ ହୋଇ ପଦକ୍ଷେପ ଗ୍ରହଣ କରାଯାଏ । ମାତ୍ର ତାହା ହେଲା ନାହିଁ । ମାର୍ଚ୍ଚ ୨୩ ତାରିଖ ବୈଠକରେ ମୁଖ୍ୟମନ୍ତ୍ରୀ ଦଙ୍ଗା ଦମନ କରିବାକୁ ପୁଲିସକୁ କ୍ଷମତା ନ ଦେଇ, ସେମାନଙ୍କର ହିନ୍ଦୁମାନଙ୍କୁ ଆରେଷ୍ଟ କରିବା ନେଇ ଭର୍ତ୍ସନା କଲେ । ସମଗ୍ର ରାଜ୍ୟକୁ ହିନ୍ଦୁତ୍ୱବାଦୀ ଗୈରୀକରଣ କରିବା ଉଦ୍ଦେଶ୍ୟରେ ପ୍ରଶାସନରେ, ପୁଲିସରେ,

ହୋମଗାର୍ଡ଼ରେ ବିଶ୍ୱ ହିନ୍ଦୁ ପରିଷଦର ସମର୍ଥକମାନଙ୍କୁ ନିଯୁକ୍ତି ଦେବା ଫଳରେ ପୁଲିସ ହିନ୍ଦୁତ୍ୱବାଦୀଙ୍କର ମୁଖା ପାଲଟି ଯାଇଛି ଏବଂ ଏହାର ବ୍ୟାପକ ଭାବେ ଗୁଜୁରାଟର ନରସଂହାରରୁ ପ୍ରତ୍ୟକ୍ଷ ପ୍ରମାଣ ମିଳିଛି । ମୋଦି ସରକାର କର୍ମଠ, ନିରପେକ୍ଷ ପୁଲିସ ଅଫିସର ଯେଉଁମାନେ ଦଙ୍ଗା ଦମନ କରିବାକୁ ଚେଷ୍ଟା କରିଛନ୍ତି, ବିଶ୍ୱ ହିନ୍ଦୁ ପରିଷଦ ସଭ୍ୟମାନଙ୍କୁ ଆରେଷ୍ଟ କରିଛନ୍ତି ସେମାନଙ୍କର ବଦଳି ହୋଇଛି, ଏବଂ ସେମାନଙ୍କ ଉପରେ ମଧ୍ୟ କାର୍ଯ୍ୟାନୁଷ୍ଠାନ କରାଯାଇଛି ।

ଗୁଜୁରାଟର ବ୍ୟୁରୋକ୍ରାସି ଓ ପୁଲିସର ସଂବିଧାନ ପ୍ରତି ଉତ୍ତର ଦାୟିତ୍ୱର ଅଭାବ ଏବଂ ରାଜନୈତିକ ମାଲିକଙ୍କ ପ୍ରତି ଅତିଶୟ ଆଜ୍ଞାବହତାର ଫଳ ହେତୁ ଗୁଜୁରାଟ ହିଂସା ବ୍ୟାପକ ରୂପନେଇ ଫାସିବାଦ ଆଡ଼କୁ ମୁହାଁଇଛି ।

## (ଢ) ଶାନ୍ତିକାମୀ ନାଗରିକମାନଙ୍କର କର୍ତ୍ତବ୍ୟ :

ଥରେ ବିଶିଷ୍ଟ ଦାର୍ଶନିକ ଆଲବର୍ଟ ଆଇନ୍‌ଷ୍ଟାଇନ୍ କହିଥିଲେ, ''ଏକବାଗିଆ ସଂଖ୍ୟାଗରିଷ୍ଠ ଲୋକମାନଙ୍କ ବିରୁଦ୍ଧରେ ଲଢ଼ିବା ଅତ୍ୟନ୍ତ କଷ୍ଟସାଧ ବ୍ୟାପାର ଏବଂ ଏହାର ଫଳାଫଳ ମଧ୍ୟ ବେଶୀ କିଛି ହୋଇନପାରେ । କିନ୍ତୁ ଏମାନଙ୍କ ବିରୁଦ୍ଧରେ ଉଦ୍ଯୋଗ କରିବା ଆବଶ୍ୟକ କାରଣ ତାହା ବ୍ୟତୀତ ମାନବ ଜାତି ଅତ୍ୟନ୍ତ ଦୟନୀୟ ଅବସ୍ଥା ଭୋଗିବ ।'' ଦୀର୍ଘ ୫୫ ବର୍ଷର ସ୍ୱାଧୀନ ଭାରତ ଇତିହାସରେ ଆମ ଦେଶର ଶାସକଶ୍ରେଣୀ ସାମାଜିକ ବିଭକ୍ତୀକରଣ ବିକାଶ ପଥରେ କାର୍ଯ୍ୟ କରି ଚାଲିଥିବା ଫଳରେ ରାଷ୍ଟ୍ର ନିଜ ସହିତ ନିଜେ ସଂଘର୍ଷରେ ଲିପ୍ତ ଯେଉଁଠାରେ ଲୋକମାନଙ୍କର ମାନସିକ ଚେତନାକୁ ଏପରି କରି ଦିଆଯାଇଛି ଯେ ଆମେ ପରସ୍ପର ପରସ୍ପରକୁ ଘୃଣା କରୁଛୁ, ହତ୍ୟା, ଲୁଟ୍‌ପୋଟ୍ ଇତ୍ୟାଦି କରି ଦେଶକୁ ଖଣ୍ଡ ବିଖଣ୍ଡିତ କରିବାରେ ଲାଗିଛୁ । ଯାହା କୌଣସି ବାହ୍ୟ ଆକ୍ରମଣ କରିପାରିବ ନାହିଁ । ବର୍ତ୍ତମାନ କେନ୍ଦ୍ରରେ ଥିବା ବିଜେପି ସରକାର ଏବଂ ଗୁଜୁରାଟ ସରକାର ଦେଶରେ ଯେତେ ସରକାର ଥିଲେ, ତା' ମଧ୍ୟରେ ସବୁଠାରୁ ନିକୃଷ୍ଟ; କାରଣ, ଅନ୍ୟ ସରକାରମାନେ ନିଜର ରାଜନୈତିକ ଭୋଟବ୍ୟାଙ୍କ ପ୍ରତିଷ୍ଠା ପାଇଁ ଓ ରାଜନୈତିକ କ୍ଷମତା ପାଇଁ ସମଗ୍ର ଦେଶକୁ ଭାଗ ଭାଗ କରୁଥିବା ବେଳେ, ବର୍ତ୍ତମାନର ଏହି ସରକାର ଏକ ଘୃଣା ଆଦର୍ଶକୁ ଧାର୍ମିକ ସ୍ଲୋଗାନ ମାଧ୍ୟମରେ କାର୍ଯ୍ୟକାରୀ କରିବାରେ ଲାଗିଛନ୍ତି । ଯଦି ରାଷ୍ଟ୍ରର ବିଭିନ୍ନ ସଂପ୍ରଦାୟ ଓ ଗୋଷ୍ଠୀ ମଧ୍ୟରେ ଅବିଶ୍ୱାସ ଓ ପରସ୍ପରକୁ ଧ୍ୱଂସ କରିବାର ମନୋବୃତ୍ତି ରହେ, ତେବେ ରାଷ୍ଟ୍ରର ଶକ୍ତି, ସାମର୍ଥ୍ୟ ଓ ଭବିଷ୍ୟତ ରହିବ ନାହିଁ । ଦେଶର ଆର୍ଥିକ, ସାମାଜିକ, ରାଜନୈତିକ ପ୍ରତିରକ୍ଷା ବା ଅନ୍ୟ ଯେ କୌଣସି ଶକ୍ତି ନିର୍ଭର କରେ ସମଗ୍ର ଲୋକମାନଙ୍କ ମଧ୍ୟରେ ସମ୍ପୂର୍ଣ୍ଣ ସଂହତି ଉପରେ ।

ସଂଘ ପରିବାରର ଭାରତର ଆତ୍ମା ଉପରେ ଯେଉଁ ଅନବରତ ଆକ୍ରମଣ, ତାକୁ ପ୍ରତିହତ କରିବା ପାଇଁ, ଶାନ୍ତିପୂର୍ଣ୍ଣ ଭାରତବାସୀଙ୍କୁ ଉଚ୍ଚତର ଧର୍ମ ନିରପେକ୍ଷ ଆଦର୍ଶ ଓ ସଂବିଧାନ ପ୍ରତି ପ୍ରତିବଦ୍ଧତା ସୃଷ୍ଟି କରିବାକୁ ହେବ । ସଭ୍ୟ ସମାଜର ଶାନ୍ତିକାମୀ ଶକ୍ତିମାନେ ତୃଣମୂଳ ସ୍ତରରୁ ହିଂସା ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ଏକାଠି ହେବାକୁ ପଡ଼ିବ । ''ବିବାଦ ନୁହେଁ ସହାୟତା, ବିନାଶ ନୁହେଁ, ପରସ୍ପରର ଭାବଗ୍ରହଣ, ମତ-ବିରୋଧ ନୁହେଁ ସମନ୍ୱୟ ଓ ଶାନ୍ତି,'' ଏହାହିଁ ଭାରତକୁ ସୁସଂହତ ରାଷ୍ଟ୍ର ଭାବରେ ଆଗକୁ ବଢ଼ିବାରେ ସାହାଯ୍ୟ କରିବ ।



# ଛବିଶଟି ଦୀପ

ମୂଳ ରଚନା : କୈଫି ଆଜ୍‌ମୀ
ଅନୁବାଦ : ସୌରୀବଂଧୁ କର

ଗୋଟିଏ ନୁହେଁ, ଛବିଶଟି ଦୀପ
ଗୋଟେ ପରେ ଗୋଟେ, ମୁଁ ଜଳାଇଛି ଆଜି ।

ସ୍ୱାଧୀନତା ନାଁରେ ଜାଳିଲି ଗୋଟେ ଦୀପ
ଜଳୁଥିବା ଓଠରେ ସେ କହିଲା:
ଯେ କୌଣସି ଦେଶରୁ ଗହମ ମାଗିଆଣ
ଆମର ଭିକ ମାଗିବାର ସ୍ୱାଧୀନତା ଅଛି ।।

ସମୃଦ୍ଧିର ନାଁରେ ଜଳାଇଲି ଆଉ ଏକ ଦୀପ
ଜଳିବାର ମୁହୂର୍ତ୍ତକ ମଧ୍ୟେ
ଏହା ଆମ ଗୋଳିଆ ବାସ୍ତବତାକୁ ବିକଶିତ କଲା
ମୋ ପେଟ ଖାଲି, ମୋ ପକେଟ ବି ଖାଲି ।।

ଏକତାର ନାଁରେ ଜଳାଇଲି ଆଉ ଏକ ଦୀପ
ଯେଉଁଠି ଯେଉଁଠି ତା'ର ଆଲୁଅ ପଡ଼ିଲା
ଦେଖିଲୁ ଆମେ ସଂପ୍ରଦାୟ ମଧ୍ୟରେ ସୌହାର୍ଦ୍ଦ ହଜିଛି
ଆହୁରି ଦେଖିଲୁ ମା'ର ଆଶ୍ରିତ ସ୍ଥାନ ଭାଙ୍ଗି ଭାଙ୍ଗି
କାନ୍ଥ ସବୁ ଅଲଗା ହେଉଛି ।।

ରାଗରେ ସ୍ତ୍ରୀ ମୋର ଚିତ୍କାର କଲେ,
ତେଲ ଖୁବ୍ ଦର ଓ ଘରେ ଆଉ ନାହିଁ
କାହିଁକି ତୁମେ ଏତେ ଦୀପ ଜଳାଇଛ
ଫାଙ୍କା, ଆମ ଘରେ କିଛି ଛାତ କି ଅଗଣା ନାହିଁ
ସ୍ୱପ୍ନ ପାଇଁ ବି କେଉଁଠି ଜାଗା ଟିକେ ନାହିଁ ।।

କ୍ରୋଧର କୁଆରରେ
ଦୀପ ସବୁ ଲିଭିଗଲା
କିନ୍ତୁ ହଁ, ଜଳୁଥିଲା ମାତ୍ର ଗୋଟେ
ସେଇଟି ଆଶାର ଦୀପ
ଓ ତାହା ମିଞ୍ଜି ମିଞ୍ଜି ହୋଇ ଜଳେ ।।



ଗଜପତି ନଗର, ଭୁବନେଶ୍ୱର-୫



ମାନନୀୟ

ଶ୍ରୀଯୁକ୍ତ ଗାନ୍ଧିଭକ୍ତ ସୌରୀବନ୍ଧୁ କର ମହୋଦୟ ।

ଆମର କୋଠଧ ସେଲରେ ଅଧ୍ୟାପନା କାର୍ଯ୍ୟରେ ବ୍ୟାପୃତ ଥିବାର ଅନୁମାନ କରାଯାଏ । ଆଜି ଆପଣଙ୍କର ଲେଖା ପ୍ରଜାତନ୍ତ୍ରରୁ ପଢ଼ି ମୋର ମୁଣ୍ଡକୁ ପିତ୍ତ ଉଠିଛି । ଭଗବାନଙ୍କୁ ମୁଁ ପ୍ରାର୍ଥନା କରୁଛି ଆପଣଙ୍କ ମୃତ୍ୟୁ ତୁରନ୍ତ ହେଉ ଓ ପାକିସ୍ତାନରେ ବାଂଲାଦେଶରେ ଆ... ପୁନର୍ଜନ୍ମ ତୁରନ୍ତ ହେଉ । ତା ହେଲେ ଭବିଷ୍ୟତରେ ଆପଣଙ୍କର ଲେଖାର ଶୈଳୀର ପରିବର୍ତ୍ତନ ହେବ । ଆପଣ ଆପଣଙ୍କ ଗାନ୍ଧିଙ୍କୁ ଗୁଜରାଟକୁ କାହିଁକି ନେଉଛନ୍ତି ? ଆପଣ ଗୋଟେ କାମ କରନ୍ତୁ । ଆପଣ ଶାନ୍ତିର ଦୂତ ହିସାବରେ ଗାନ୍ଧିଜୀଙ୍କ ପ୍ରେରଣାକୁ ପାଥେୟ କରି ଦୟାକରି କାଶ୍ମୀର ଯାଆନ୍ତୁ । ସେଠାରେ ଆପଣ ପାକିସ୍ତାନୀ ଉଗ୍ରପନ୍ଥୀଙ୍କୁ ଗାନ୍ଧି ନୀତି ଉପରେ ଉଦ୍‌ବୋଧନ ଦେଇ ତାଙ୍କର ଭାରତୀୟ ପ୍ରେମକୁ ଉଦ୍‌ଭାବିତ କରି କାଶ୍ମିରୀ ପଣ୍ଡିତମାନଙ୍କୁ ମାରିବା ପାଇଁ ପ୍ରେରଣା ଦେବେ । ଧନ୍ୟରେ ତୁମେ ସୁଡୋ ଏଡୁକେସନିଷ୍ଟ । ଆପଣଙ୍କ ଭଳି ସୁବିଧାବାଦୀ ଓ ଶସ୍ତା ଲେଖକଙ୍କୁ ଉହୁଡ଼ିଆ ଖରାବେଳେ ଆରବ ମିଆଁଙ୍କ ହାତରେ ବାଗଡଙ୍କ ଦେଇ ଦୁଇ ଚାରି ଛାଟିଣି ଦେଲେ ଆପଣ ମାନଙ୍କର ବିବେକର ଉଦୟ ହେବ ।

ଆପଣଙ୍କ ଲେଖାପାଇଁ ଅଶେଷ ଧନ୍ୟବାଦ । କାରଣ ଗଣତନ୍ତ୍ରରେ ଲେଖିବା ଉପରେ କୌଣସି ପ୍ରତିବନ୍ଧକ ନାହିଁତ ?

ଧନ୍ୟବାଦ ସହ

୧୯୯୨ ମସିହା ଦଙ୍ଗାର କ୍ଷତିଗ୍ରସ୍ତ ଜଣେ ମଣିଷ

*(ଗୋଧ୍ରା ଘଟଣାକୁ ଲକ୍ଷ୍ୟ କରି ସାଂପ୍ରଦାୟିକ ସମ୍ପ୍ରୀତି ପାଇଁ ଲେଖକଙ୍କର 'ପ୍ରଜାତନ୍ତ୍ର'ରେ ପ୍ରକାଶିତ 'ଗାନ୍ଧିଜୀଙ୍କ ପ୍ରଶ୍ନ' ଲେଖା ଉପରେ ପ୍ରତିକ୍ରିୟା)*

**ମୂଲ୍ୟ : ଟ୧୦/- ମାତ୍ର**

ପ୍ରଚ୍ଛଦ ସୌଜନ୍ୟ  ଲଣ୍ଡିଟା ତୁଳେ